ସଚିତ୍ର

# ଭଜନସାର

## ପ୍ରଥମଭାଗ ଓ ଦ୍ୱିତୀୟଭାଗ



ଶ୍ରୀ କାଶୀନାଥ ପଣ୍ଡାଙ୍କ ଦ୍ୱାରା ରଚିତ ଓ ସଂଗୃହୀତ

ଶ୍ରୀ ପ୍ରମଥଲାଲ ସରକାରଙ୍କ ଦ୍ୱାରା
ତୃତୀୟବାର ପ୍ରକାଶିତ ।



PRINTED AND PUBLISHED BY SARAT CH. ROY
AT THE ANGLO-SANSKRIT PRESS,
51, SANKARITOLA,
CALCUTTA.
1921.

ମୂଲ୍ୟ ଦୁଇଅଣା ମାତ୍ର ।

# ସୂଚୀପତ୍ର ।

# ସୂଚୀପତ୍ର ।

—o—



# ଭଜନସାର ।

## ପ୍ରଥମଭାଗ ।



ତାଳ—ଠୁମୁରି ।

ଅହେ ମହେଶ୍ୱର, ବାରେ ଭବଘୋର ଭ୍ରାନ୍ତି ଦୂରକର ।
କେତେ ବେଳ ହେଲା ଅତି ଭୟଙ୍କର, ନାହିଁ ତୁମ୍ଭ ବିନା ପ୍ରତିକାର । ପଦ ।
ନିରନ୍ତର ନାନା ପ୍ରଲୋଭନ । ବଳାଏ ଅବାଚ୍ୟ ପଥେ ମନ । ଅସାର
ସମ୍ପଦ ପାଇଁ ସାଧୁବାଦ ସୁସମ୍ପ ହେଉଅଛି ଦୂର । ୧ । ସତେ ଦୀନ-
ନାଥ କେତେ କାଳେ । ସୁପଥ ମିଳିବ ଭାଗ୍ୟବଳେ । ତୁମ୍ଭ ସୁମଧୁର
ନାମ ହୃଦହାର । କେବେ ପୂର୍ଣ୍ଣ ହେବ ସାଧ ମୋର । ୨ । ଶୟନେ
ସ୍ୱପନେ ଅହର୍ନିଶ । ପ୍ରେମନାମ ହେବ ପରକାଶ । ସେହି ଜ୍ଞାନ ଧ୍ୟାନ
ଗଣ୍ଠିଧନ ସମ । ଭଲେ ମନରୁ ନୋହିବ ଦୂର । ୩ । ଅହେ କରୁଣା-
କର ପରାତ୍ପର । ସଂସାର ସାଗର କର୍ଣ୍ଣଧାର । ଅନାଥର ନାଥ ଫେଡ଼
ମୋ ଆରତ । ପଦ୍ମପାଦତଳେ ଦାସ କର । ୪ ।





ତାଳ—ଏକତାଳ ଆଡ଼ ଖେମଟା ।

ନମଃ କାଳିକେ ରକ୍ତପାଳିକେ ମୁଣ୍ଡମାଳିକେ ହର ମୋହିନୀ ।
'ଦାନବଦଳନି ଦୁର୍ଗତିନାଶିନି ଭୂଭାର୍ ହାରିଣୀ ତାରିଣି । ପଦ ।

ନବନୀଳଘନ ବରନ କାନ୍ତି, ତ୍ରିନୟନ ଦଶନ ସୁଦନ୍ତି । ତୁମ୍ଭ ପ୍ରସାଦରେ ଶିବଙ୍କେ ଭବରେ ସୁଖରେ କରନ୍ତି ଭ୍ରମଣି । ଚତୁର୍ଭୁଜା ନର କର ଶୋଭିତ, ମୁକ୍ତକେଶି ଶ୍ରୀମଦୟ ହାରିଣି । ତ୍ରିପୁରପାଳିନି ନାଶିନି ଅମ୍ବିକେ ଅସୀମ ମହିମା ଧାରିଣି । ୨ । ଯେ ଯେଉଁଭାବେ ତୁମ୍ଭଙ୍କୁ ଭଜଇ, ତା ବାଞ୍ଛା ପୂର୍ଣ୍ଣକର ଦୟାମୟି । ଦାରିଦ୍ର୍ୟ ଭଞ୍ଜନି ମୁକ୍ତି ପ୍ରଦାୟିନି । ଅଭୟ ବର ବିଧାୟିନି । ୩ । ବ୍ରହ୍ମାଣ୍ଡ ଭାଣ୍ଡ ତୁମ୍ଭ ଅନୁଗତ । ଯକ୍ଷ ନାଗ ସୁରାସୁର ବନ୍ଦିତ । କର କୃପା ହର ଅଜ୍ଞାନ-ତିମିର ଘେନ ସନ୍ତାନର ଦୟିନୀ । ୪ ।



ତାଳ—ଛଠକା ।

ଦୟାନିଧି ବୋଲି ନାମ ବହିଅଛ କାହିଁପାଇଁ ।
ଦୟାପଦ ହୃଦରେ ନାହିଁ । ପଦ ।

ସତ୍ୟଯୁଗେ ଦୈତ୍ୟରାଜ । ଛଳିବାକୁ ଦେବରାଜ । ବାମନମୂରତି ହୋଇ ବିଜୟ ତହିଁ । ଭକ୍ତିଭାବେ ପୂଜା କଲା ସେ ନରସାଇଁ ।

ଯାଦେ ଗୋପୀ ଛଳପୁରେ ରଖିଲ ତାହାଙ୍କୁ ନେଇ । ୧ । ତ୍ରେତୟାରେ ରଘୁନାଥ ଦଶରଥଙ୍କର ସୁତ ପିତାସତ୍ୟ ପାଳି ବନବାସକୁ ଯାଇଁ । ସୀତାହତେ ନାଶ କଲ ସେ ଲଙ୍କସାଇଁ । ସେ ସୀତା ବନେ ପେଷିଲ ଜାର୍ଦ୍ଦ୍ୟ ଭାବକୁ ବନ୍ଧ । ୨ । ଦ୍ୱାପରରେ ମଧୁପୁରେ ଜନ୍ମି ଦେବକୀ ଉଦରେ । ଗୋର ପ୍ରାପ୍ତ ନନ୍ଦଘରେ ଲୁଚିଲ ଯାଇଁ । ରାଧାଭାବେ କୃଷ୍ଣନାମକୁ ଅଛବନ୍ଧ, ସେ ରାଧାକୁ ପାସୋରିଲ କୁବୁଜା ପୁରେ ରହି ॥ କଳିକାଳେ ନୀଳାଚଳେ ବାସ କରି ସିନ୍ଧୁ କୂଳେ ବଉଦ ରୂପରେ ଅଛ ମଉନ ହୋଇ । ସନ୍ନ୍ୟାସରେ ଦ୍ୱିଜ ସୁଦର୍ଶନ କହଇ । ମିଛେ ପତିତପାବନ ବାନା ଉଡ଼ାଅ କିପାଇଁ । ୪ ।



ତାଳ—ଏକତାଳି ଆଡ଼ଖେମଟା ।

ଅଭୟ ପାଦପଦ୍ମକୁ କରି ଭୁ ଆଶା ।
ଚିର ନୁହେ ଏ ଶରୀର ଅଛୁ କି ଦଶା । ପଦ ।

ଅକାରକୁ କର ଠାବ । ଇକାରେ ଲଗାଅ ଭାବ । ଉକାରଟି ସବ-ଶୁଦ ଏ ତିନି ମିଶା । ୧ । ସ୍ୱୟଂଶୂନ୍ୟପରେ ଶୂନ୍ୟ ତଥିପରେ ନିରଞ୍ଜନ । ନାହିଁ ଯହିଁ ବାଇ ଛର ଦିବସ ନିଶା । ୨ । ପଞ୍ଚମାତ୍ରା ପଞ୍ଚସ୍ଥାନ । ପଞ୍ଚସ୍ୱରେ କର ଜ୍ଞାନ । ପଞ୍ଚାଶଦଳ ଭେଦିଣ ଖେଳାଅ ହଂସା । ୪ । ନାମକୁ କର ଭଜନ । ଅନାମେ ପଶ ଶରଣ । ଭାବେ ଦାସ ରଘୁନାଥ ଶୂନ୍ୟ ଭରସା । ୫ ।



ତାଳ—ଏକତାଳି ଆଡ଼ଖେମଟା ।

ମଣିମା ଗୁଣିମା ହେଉ ଗର୍ବ ଡ଼ାକ ।
ନିରସ ଜନକୁ ରଖ ପଙ୍କଜମୁଖ । ଘୋଷା ।

କୃପାସାଗର କାହିଁକି, ମୋ ବେଳକୁ ଗଲ ଶୁଖି, ଜାଣିଲ ମୋ କର୍ମ ବାଙ୍କ ନୋହେ ସଳଖ । ୧ । ଅକଳଙ୍କନାଶନବାନା ନ ଶୁଣ ଭୃତ୍ୟ

ବେଦନା, ଏବେ ହୋଇଯିବ ମନା କେ ଦେବ ଡ଼ାକ । ୨ । ଦାସ ଯେବେ ନାଶ ଯିବ, କୀର୍ତ୍ତିରେ ଅକୀର୍ତ୍ତି ହେବ, କାରଣଭନ୍ଦ୍ରେ ଲାଗି-ଯିବ କଳଙ୍କ । ୩ । କହେ ସ୍ୱପ୍ନାନନ୍ଦ ଛାର, ନାହିଁ ଆନ ପ୍ରତୀକାର, ଏ ହୀନ ଅବସ୍ଥା ମୋର କେଣେ ନ ଦେଖ । ୪ ।



ତାଳ—ଏକତାଳି ।

ଦୟାନିଧି ଦୟା କି ପାସୋର ।
ଦୁଃଖେ ଡ଼ାକି ଡାକି ମୋ ତନୁ କାତର । ପଦ ।

ଦୀନବନ୍ଧୁ ବୋଲି ଆଶ୍ରେ କଲି ତୁମ୍ଭର । ଭାସୁଛି ଅଗାଧ ନୀରେ ନ ପାଇ ତୀର । କୃପାତରଣୀ ଦେଇ, କୂଳେ ଲଗାଅ ନେଇ, ନ ରଖିଲେ ଗୋସାଇଁ, ରଖନ୍ତା କେହି ନାହିଁ, କଷ୍ଟୁର ନୁହ ରଙ୍ଗଅଧର । ୧ । ଯାହା ମନୋବାଞ୍ଛା ରମା ଏ ଭବପୁର । ତା-ଭୃତ୍ୟଙ୍କୁ ଦୁଃଖୀ ବୋଲ ଏହୁ ସଂସାର । କମଳନେତ୍ରେ ହରି, ଚାହିଁ ଦେଲେ ମୁରାରି, ରତ୍ନ-ଭଣ୍ଡାର ସରିଯିବ ନାହିଁ ତୁମ୍ଭରି; କଷ୍ଟୁର ନୁହ ନନ୍ଦକୁମର । ୨ । ଦୁଷ୍ଟ-ଚିନ୍ତାଜ୍ୱର ଆସି ମିଳି ସତ୍ୱର । ଏ ଦିବ୍ୟ ତନୁକୁ କଲା ସେ ଜାରଖାର । ନାମାମୃତ ଔଷଧି, ଦେଇଣ ଦୟାନିଧି, ଚିନ୍ତାଜ୍ୱରକୁ ବଧି, ଦିଅ ଯେବେ ଔଷଧି ନୋହିଲେ ଇଚ୍ଛା ଯାହା ତା କର । ୪ । ଚାହିଁ ଚାହିଁ ମୋ ଚକ୍ଷୁରୁ ଶୁଖିଲା ନୀର । ଶୁଣି ଶୁଣି କର୍ଣ୍ଣ ମୋର ହେଲା ବଧିର । ଜଣାଣ କଲେ ଯେତେ, ତାହା କହିବି କେତେ, ହେଜ ଆପଣା ଚିତ୍ତେ, କେ ଦେବ ଜଗନ୍ନାଥେ, ଦୀନ କାଶୀକି କର ଉଦ୍ଧାର । ୪ ।



ତାଳ—ଏକତାଳି ଆଡ଼ଖେମଟା ।

ଦୁଃଖ ନାଶନ ଗରୁଡ଼ାସନ ହରି ଦୁଃଖ ଜଣାଇବି କାହାକୁ ।
ଦୀନନାଥ ଥାଉ ଅନ୍ଧାର ଘୋଟୁଛି ଏବିଦା ହୋଇବ କାହାକୁ । ପଦ ।
ଚିନ୍ତାନାବ-ପରେ ବସାଇ କରି, ପେଲିଦେଲ ବୁଡ଼ି ଯାଉଛି ମରି ।

କାହାକୁ ଡ଼ାକିବ ରଖରଖ ବୋଲି ଲଜ୍ଜା ହେବ ଲକ୍ଷ୍ମୀନାହାଙ୍କୁ । ୧ ।
ସୁଦାମ ଦାରିଦ୍ର୍ୟଭଞ୍ଜନ କରି, ରଖିଛ ପାଣ୍ଡବେ କୁରୁ ସହାଇ ।
ଜଳର ଭିତରେ ଗଜକୁ ରଖିଲ, ଛେଦି ପକାଇଲ ଗ୍ରାହାକୁ । ୨ ।
ଅଜାମିଳ ନାମେ ସେ ମହାପାପୀ, ଉଦ୍ଧରିଗଲା ପୁତ୍ର ନାମକୁ ଜପି ।
ନାଟେକ ମାଇଲା ଶ୍ରୀବତ୍ସବ୍ରାହ୍ମଣ ହୃଦେ ବହିଅଛ ତାହାକୁ । ୩ ।
ଯେଉଁ ନାମ ଧରି ପବନସୁତ, ଡେଇଁ ସମୁଦ୍ର ଆଣିଲା ସଙ୍କେତ ।
ସେ ପାଦେ ଶରଣ କାଶୀବିଶ୍ୱେଶ୍ୱର, ବ୍ରହ୍ମା ନ ପାଇଲେ ଯାହାକୁ ॥



ତାଲ—ଆଡ଼ାଖେମଟା ।

ଜଗବନ୍ଧୁ ପରି ଜଣେ ସାମନ୍ତ ; ନାହିଁ ନାହିଁତ ।
ଚଉଦଭୁବନ ବାରତା ଜାଣନ୍ତି ରହିରେ ଛେଦନ୍ତି ଆରତ । ପଦ ।
ଯେତେବେଳେ କୃଷ୍ଣ ଗୋପପୁରେ ଥିଲେ ଅକ୍ରୁର ଆଣିଣ ଗଲାତ ।
ଗାଇ ଦୁହିଁ ଦୁହିଁ କେଶ ଫିଟିଗଲା ଚତୁର୍ଭୁଜ ହେଲେ ଅନନ୍ତ । ୧ ।
ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ ବାଳିକି ବିନାଶ କଲେତ ।
ରାବଣଭ୍ରାତା ଯେ ଶରଣ ପଶିଲା ଲଙ୍କାଗଡ ତାକୁ ଦେଲେତ । ୨ ।
କୁରୁ-ସଭା-ତଳେ ଦ୍ରୌପଦୀ ଡାକିଲା କୋଟିବସ୍ତ୍ର ଦିଆଇଲେତ ।
ଭାରତଯୁଦ୍ଧରେ ଭରତିଆପକ୍ଷୀ ଘଣ୍ଟ ଘୋଡ଼ାଇ ରଖିଲେତ । ୩ ।
ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ ନାଶିନେ ଆରତ ଘୁରତ ।
କହେ ଦୀନକୃଷ୍ଣ ଦାସ ସେ ଶ୍ରୀକୃଷ୍ଣପଦ୍ମପାଦେ ଚିତ୍ତ ଧ୍ୟାୟିତ । ୪ ।



ତାଲ—ଖେମଟା ।

ମହାପ୍ରଭୁ ଡ଼ାକିଲେ ନ ଶୁଣ କାହିଁକି ।
ପତିତପାବନ ବାନା ବୋଲି ତୋର ଦୁଃଖ ଜଣାଉଛି ତହିଁକି । ପଦ ।
ଅଲୁଡ଼ଶାଳରେ ଷୀର ଦେଲାବେଳେ ମାଇଲ ପୂତନା ଧାଇକି ।
ଗର୍ଭର ଭିତରେ ଅଶେଷ ବ୍ରହ୍ମାଣ୍ଡ ଦେଖାଇଲ ନିଜ ଅଇକି । ୧ ।

ମଥୁରାରେ ପଶି ଗଜବଳ ନାଶି ମାଇଲ ପୂତନାରାଇଙ୍କି ।
ପାଣ୍ଡବଙ୍କ ଛଳେ କୁରୁଙ୍କୁ ନାଶିଲ ଏମନ୍ତ ବାନ୍ଧବ ପାଇ କି । ୨ ।
କୁରୁ ସଭାତଳେ ଦ୍ରୌପଦୀ ଡାକନ୍ତା କୋଟିବସ୍ତ୍ରତାକୁ ଦେଇ କି ।
ମୃଗଣୀ ଆରତ କେତ୍ରେ ଆରମ୍ଭିତ କବେ ଦେଲ ମୁକୁଳାଇ କି । ୩ ।
ନୀଳାଚଳେ ପ୍ରଭୁ ସ୍ୱରୂପ ହୋଇଣ ଦାରୁଣ ହେଉଛ କାହିଁକି ।
କହଇ କିହାଶି ପର୍ଶୁରାମ ଦାସ ଭକାନୟନକୁ ଚାହିଁ କି । ୪ ।



ତାଳ—ଏକତାଳି ।

ଭୁଜତଳେ ମୋତେ ରଖ ମହାବାହୁ । ବାହୁତଳେ ମୋତେ ରଖ ।
ବିପୁଳ ଭୁଜ ବିସ୍ତାରି ଦେଲେ ଛାର କି କରି ପାରିବ ଦୁଃଖ । ପଦ ।
ସଜ ହୋଇଥିବ ନନ୍ଦଘୋଷରଥେ ମୁଁ ଥିବି ତୁମ୍ଭ ସେବାରେ ।
ତୁମ୍ଭେ ଦୀନବନ୍ଧୁ ନିର୍ଦ୍ଦୟ ହୋଇଲେ କି ବୋଲିବେ ଏ ସଂସାରେ ॥
ଏ ଗଜରାଜ ସମ୍ପତ୍ତି ଛିଡ଼ିପଡ଼ି ରହିବ ତୁରଇ ନାହିଁ ।
ଭାସି ଯାଉଅଛୁ ଏ ଭବସାଗରେ ରକ୍ଷା କର ଜୀବିତ୍ରାହି । ୨ ।
ଦିନକୁ ଦିନତ ଦୁଃଖ ଅଧିକେକ ସୁଖତ ଦିଶଇ ନାହିଁ ।
ଭୁବନମୋହନ ଚକା ନୟନକୁ ଯେତେବେଳେ ଦେଲି ଚାହିଁ । ୩ ।
ମୁଁ ଅତି ପତିତ ଭରସା କରିଛୁ ପ୍ରଭୁ ଶ୍ରୀଚରଣ ତଳେ ।
ଶ୍ରୀବୀରକେଶରୀ ମହାରାଜା ଭଣେ ଦୟାକର ମୋରେ ବେଳେ । ୩ ।



ତାଳ—ଖେମଟା ।

କହଇ ସୁମନ; ଧେନ ମୋ ବଚନ ।
ଅନାଦି ଏକାକ୍ଷର ଭଜନ । ଘୋଷା ।

ପ୍ରଥମ ଓମତି ପରେ । ଦୀନ ବିନ୍ଦୁ ଦେଖ ଧୀରେ । ଅଣାକ୍ଷର ତା
ଶିଖରେ । ରହିଛୁ ଅତି ଯତ୍ନରେ । ବତ୍ରିଶାକ୍ଷର ହେ । ମନ୍ତ୍ର ତହିଁରେ
ହେ । ଦ୍ୱାଦଶସ୍ୱରେ ବାଦ୍ୟ ବାଜୁଅଛୁ ଘନ ଘନ । ୧ ।
ଆସୁଛୁ ଯାଉଛୁ କୀର । ଏ ବାରକୁ ସେ ବାହାର । ବାର ପରେ

ତାର ଘର । ଲୀଳା ଯେ ଦିବାମ୍ବର । ରାଧା ସଙ୍ଗର ହେ । ବୃନ୍ଦା-
ବନର ହେ । ଅମଳ ମଧ୍ୟରେ ରଖି କର ତାଙ୍କ ଧିଆନ । ୨ ।
ଶୁକ ସନକାଦ ଯତି । ଭାବ ତାହାଙ୍କୁ ନ ପାନ୍ତି । ଧ୍ୟାୟି ତାହା
ପଶୁପତି । ଅଜାମର ହୋଇଛନ୍ତି । ଭାବଲେ ଭକ୍ତି ହେ । ନାହିଁ ଦୁର୍ଗତି
ହେ । ଭାବନା କର ଗୁରୁଦେବଙ୍କର ଚରଣ । ୩ । ତୋ ଆଗେ କହୁଛି
ମୁହିଁ । କାଆଗେ କହିବୁ ନାହିଁ । ଗୁପତଭାବରେ ରହି । ଭଜନ
କରିବୁ ତୁହି । ମନ ମଜାଇ ହେ । ଚିତ୍ତ ରଞ୍ଜାଇ ହେ । ପାଇବୁ
ସଦଗତି କହେ ରଘୁନାଥ ହୀନ । ୪ ।



ଚାଲ—ଆଡ଼ଖେମଟା ।

ଅଭଜନା ଭଜରେ ବାବୁ । ଯେବେ ଭବୁ ତରିବୁ ।
ଦନ୍ତ ଜିହ୍ୱା ଯହିଁ ନ ଲାଗଇ ତାକୁ ଭଜିବୁ । ପଦ ।

ଆଠ ମଠ ଷୋଳ ଘାଟ । ଗୁମ୍ଫାକୁ ଗୋଟିଏ ବାଟ । ଲାଗିଛି
ଯୋଡ଼ କବାଟ । ଫେଡ଼ ପଶିବୁ । ୧ । ନ ପଢ଼ି ପଢ଼ିଲା ପାଠ । ପଢ଼ା
ଗୁରୁଙ୍କୁ ଅଦେଷ୍ଟ । ହିଲ ଧାଡ଼ ତଳେ ହାଟ କିଣି ବିକିବୁ । ୨ । ଚଉ-
ବନରୁ ବାହାର । ଅବନା ଶ୍ବର ଅକ୍ଷର । ଚତୁର୍ବେଦ ପରେ ସାର ।
ତରଙ୍କିଥିବୁ । ୩ । ନିଶବଦରୁ ଶବଦ । ବାରମ୍ପୁଣ ଯାଏ ଭେଦ ।
କାହିଁ ବି ମଣ୍ଡଳନାଥ । ଚଳେ କରିବୁ । ୪ । ଓଁକାର ମୂଳ ଅଟଇ ।
ନିଗମ ସ୍ଥାନଟି ସେହି । ଜପ ମନ୍ତ୍ରମାଷ ନାହିଁ । ମୁଖେ ଭଜିବୁ । ୫ ।
ତୋ ଆଗେ କହୁଛି ମୁହିଁ । କାଆଗେ କହିବୁ ନାହିଁ । ବୋଲେ
କାଶୀନାଥ ଦ୍ୱିଜ । ବାରେ ଭଜିବୁ । ୬ ।



ଚାଲ—ଛପକା ।

ଆହେ ନୀଲଗିରି । ତୁମ୍ଭ ଶ୍ରୀଭୁଜେ ଦର୍ପଣ କେଣି କେଣି । ପଦ ।
ତୁଳସୀ ଚଉରା ପାଶେ ଜଗି । ବସି ଧ୍ୟାଉଛନ୍ତି କେତେ ଯୋଗୀ ।
ବ୍ୟାଘ୍ରଚର୍ମ ପାଡ଼ି ସ୍ତୁତି କରୁଛନ୍ତି । ଜପୁଛନ୍ତି ନାମ ସଙ୍ଖ୍ୟା କରି । ୧ ।

ବଡ଼ଦାଣ୍ଡ ଦେଖି ହେଲ ତୋଷ । ରେଣୁମାନ୍ଧ ହେଣୁ କଲ ଗ୍ରାସ ॥ ଷୀଶ୍ରୀ ଖେଉଡରେ ଶତ୍ରୁ ନ ବୋଧଇ । ଠେଙ୍କ ତୋରଣିରେ ମନ ତୋଷ । ୨ । ସିଂହଦ୍ୱାରେ ପଡ଼େ ବେତବାଡ଼ି । ବାଜନ୍ତେ ପାଁଚକ ଯାଏଶ୍ଳଡ । ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଏକକୁ ଆରେକ ହୁଡ଼ା-ହୁଡି । ୩ । ବାଇଶ ପାବଚ୍ଛ ଗଲ ସୁଖେ । କୈବଲ୍ୟ ପସରା ବେଲ ପାଖେ । ଚଣ୍ଡାଳଁ ବ୍ରାହ୍ମଣ ଶୂଦ୍ର ପରିଯନ୍ତେ । କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ॥ ବୈତ୍ରଣୀ ପାହୁକା ଲୁଣ୍ଡ ରଜ । ସିଂହ ମାଡବହିଅଛୁ ଗଜ । ସତେ କି ଏ ଜନ୍ମ ସୁଫଳ ହୋଇବ । କାକ ପତି ହେଲ ଚତୁର୍ଭୁଜ । ୫ । ଗରୁଡ ପଛରେ ରହି ଦେଖ । କି ଶୋଭା ପାଉଛୁ ପଦ୍ମମୁଖ । ହୀରା ନୀଳା ମୋତି ମାଣିକ୍ୟ ଜଡ଼ୁଛୁ । ହୃଦେ ଲମ୍ବିଅଛୁ କ୍ୟାଘ୍ରନଖ । ୬ । ଶ୍ରୀ ଜଗନ୍ନାଥଙ୍କ ଠାକୁରାଣୀ । ସୁବର୍ଣ୍ଣଥାଳୀରେ ଅର୍ଘ୍ୟ ଆଣି । କଲା ଶ୍ରୀମୁଖକୁ ବନ୍ଦାଣ କରନ୍ତି । ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି । ୭ । କହେ ସାଲବେଗ ହୀନ ଜାତି । ଶ୍ରୀ ରଙ୍ଗାରରଣେ ରହୁ ମତି । ଶ୍ରୀଜଗନ୍ନାଥଙ୍କୁ ଜଣାଣ କରୁଛୁ । ବାରେ ରକ୍ଷାକର ଲକ୍ଷ୍ମୀପତି । ୮ ।



ଚାଲ—ଦକ୍ଷିଣ ଯତି ।

ହେ ଜଗନ୍ନାଥ । ନ ଜାଣ କି ମୋହରି ଆରତ । ପଦ ।

ଗଜ ପୁଣି ଯେ ମୃଗିଣୀ । ତାକ କର୍ଣ୍ଣେ ଅଛ ଶୁଣି । ପ୍ରହଲାଦ ଭକ୍ତି ଜାଣି । ସ୍ତମ୍ଭ ଜାତ ହେଲ ପୁଣି । ଶୁଣିଅଛୁ ଏଡ଼େ ପୁରୁଷାର୍ଥ ହେ ।୧। ଲବକୁ ନିକଟ ହରି । ସୁଗ୍ରୀବରେ ମିତ୍ର କରି । ଉଚ୍ଛିଷ୍ଟ ଦେଲ ଶବରୀ । ତାହା ଦେଲ ଗ୍ରାସ କରି । ବାହୁଥିଲ ପରା ପାର୍ଥରଥ ହେ ॥ ଶରଣ ଯେ ବିଭୀଷଣ । ଲଙ୍କେ କଲ ନୃପରାଣ । ସମୁଦ୍ରେ ବନ୍ଧ ବାନ୍ଧଣ । ସଙ୍ଗେ ଘେନି କପିଗଣ । କାଟି ପକାଇଲ ଦଶମାଥ ହେ ॥ ଶ୍ରୀ ଆଲକନ୍ଦରେ ରହି । ତାକ କର୍ଣ୍ଣେ ଶୁଭୁ ନାହିଁ । ଏଡ଼େ ନିଷ୍ଠୁର ସେ ଦେହୀ । ଦୀନ ପଦନ କହଇ । ପଦ୍ମପାଦେ ରହୁ ମୋର ମାଥ ହେ ॥





ଜଗନ୍ନାଥାଖ୍ୟୋ ନମୋ ନମଃ ।

ଢାଳ—ଛପକା ।

ଜୀବ ପରମ ହୁହଁଙ୍କର ହଗ୍‌ର ।
ଗଲ ଏ ଘରୁ ହୋଇଯିବା ବାହାର । ପଦ ।

ଧରଣୀ ଯେ ଜଟିଅଛୁ ସୁନାଭଣ୍ଡାର । ସେହୁ ଘୁମାଇଲେ ଘରେ ପଶିବ ଚୋର । ପାଞ୍ଚ ପଚାଶ ଲୋକ ଅବଶ୍ୟ ଦେଲେ ଦୁଃଖ । ଛଡ଼ ଅଇଣ୍ଡ ମିଶି କରିବେ ଝିଙ୍କା ଝିଙ୍କି । ଦୟା ନାହିଁ ତାଙ୍କର ଦୁଃଖ ଦେବେ ଅପାର । ଛାତିରେ ଲଦିଦେବେ ପଥର । ୧ । ସୁମନ ମିଶି-ଲାଣି ଦମନ ସଙ୍ଗର । ସୁମନଙ୍କୁ କୁମନ ମାଗୁଅଛୁ ହଗ୍‌ର । ସେମାନେ ଘାଟ ଭୁଠ ରୁନ୍ଧଦେବେ ସେ ବାଟ । ଅବଇ ମଣ୍ଡଳଙ୍କୁ ଦନେ କରିବେ ନଷ୍ଟ । ଆସି ମିଳବେ ଖଣ୍ଡ ଭାଙ୍ଗିବେ ଗୋଲାହାଟ । ଲୁଟି କରିଣ ନେବେ ବଜାର । ୨ । ଅଖଣ୍ଡଲ ଦୀପ ଲଭି ହେବ ଅନ୍ଧାର । ଆମ୍ଭେ ଚଳିଗଲେ ବୁଡିଯିବ ସଂସାର । ଯମୁନା ବଢ଼ିଯିବ ଘାଟଅଥଲ ହେବ । ଅଣଚ୍ଛଣ ବହିବ ମେରୁକୁ ବୁଡ଼ାଇବ । ପ୍ରଳୟ କାଳେ ନାବ କେଉଁଠି ସ୍ଥିତ ହେବ । ପାଣି ପଶିବ ଶୂନ୍ୟ ମନ୍ଦର । ୩ । ଏତେ କହିଣ ସେ ଘରୁ ହେଲେ ବାହାର । କି କରିବା ଭିଆଇଅଛୁ ନନ୍ଦକୁମର । କହଇ ଗଣ୍ଡାଧର ବିଶ୍ୱକରମା ଘର ଛତିଶ ଦନକରି ସାରିଲା ଯଣକର । ପାଣି ଫୋଟକାଠାରୁ ହୀନ କଲା ଶରୀର । ଶୂନ୍ୟ ପବନ ମିଶେ ଶୂନ୍ୟର । ୪ ।

---

ଢାଳ—ଖେମଟା ।

ଦଅଁ ଦେଖିଯିବା ଗୋ ସହି ।
ଦେଉଳରେ ଦଅଁ ଦେବତା ନାହିଁ । ପଦ ।

ଦଅଁ ଦେଖିବାକୁ ମନରେ ଶରଧା ଦେଉଳ ଭିତରେ ପଶିଲି ଯାଇଁ । ୧ । ସୂତ୍ରମୂନେ ବାଟ ଦଅଙ୍କୁ ନିକଟ ଯୋଗମାୟା ଘାଟ ଉପରେ ଯାଇଁ । ୨ । ବଂଶୀବଟ ତଟ ରାଧା କୃଷ୍ଣ ମଠ ଦ୍ୱାଦଶ ଯୋଜନ ରାହାସ ଯହିଁ । ୩ । ଅଷ୍ଟକୁଳନାଗ ଘେରିଣ ବିହାର କନକ-

ଶଯ୍ୟନ ଉପରେ ଯାଇଁ ।୪। ସିନ୍ଧୁ ତଟ ବଟପୃଷ୍ଠରେ ବିଜୟେ ରାଧା କୃଷ୍ଣ ଯହିଁ ବାରଣ ନାହିଁ ।୫। ଜାଉଁଳୀ କବାଟ ବସିଅଛୁ ହାଟ ରୋହଣୀ-କୁଣ୍ଡ ପାରୁଶରେ ରହି ।୬। କହଇ ସାଧୁଆ ଗୁରୁ ଆଜ୍ଞା ଥିଲେ କମଳପୃଷ୍ଠରେ କଲାକହାଇ ।୭।

---

ଚାଳ—ଏକତାଳ ଆଡ଼ାଖେମଟା ।

ଭଜ ମନ ଏକାକ୍ଷର ଶୂନ୍ୟ ଭଜନ ।
ମହାଶୂନ୍ୟ ପୂର୍ଣ୍ଣବ୍ରହ୍ମେ ଲଗାଅ ଧ୍ୟାନ । ପଦ ।

ବ୍ରହ୍ମାଦି ତେତିଶ ଦେବ । ନ ପାନ୍ତି ତହିର ଭାବ ଜାଣି ତାହା ସଦାଶିବ କରନ୍ତି ପାନ ।୧। ଓଲଟ ସମୀର ଟେକ । ଅମନ ମନ୍ଦରେ ରଖ ପଞ୍ଚନାଡ଼ୀରକୁ ଯୋଖ ନିଗମସ୍ଥାନ ।୨। ଝରୁଛି ତ୍ରିବେଣୀ ଝର । ଝରନ୍ତି କେତେ ମଧୁର ଝରଣିରେ ଛନ୍ଦି ହୋଇ ଯୋଗ ଜାଗିଣ ।୩। ସନ୍ତ ସାଧୁସଙ୍ଗେ ବସ ପାଇବ ପରମହଂସ ଗୀତେ କହେ ରଘୁଦାସମୂଢ଼ ଅଜ୍ଞାନ ।୪।

---

ଚାଳ—ଯତି ।

ନରହାଟକୁ ଗମନରେ ମନ ରେ । ପଇସା କଉଡ଼ି କିଛୁ ଲୋଡ଼ା-ନାହିଁ ଦୟା ଶାନ୍ତି କ୍ଷମା ଘେନ ରେ । ପଦ ।

କ୍ଷୀର ସିନ୍ଧୁ ତୀରେ ହାଟ ବସିଅଛୁ ଚଉଷଠି କୋଶ ସନ୍ଧି ଗ୍ରାମ । ଗୋଲ-ହାଟ ବୋଲି ନାମ ବୋଲାଇଛୁ ଗଡ଼ ନାମ ତା ତ୍ରିକୋଣ ରେ ।୧। ହାଟର ନିକଟେ ବଟବୃକ୍ଷ ଅଛୁ ବାଞ୍ଛାନିଧି ତାର ନାମ । ଉତ୍ତର ଦକ୍ଷିଣ ପୂର୍ବହିଁ ପଶ୍ଚିମ ବସନ୍ତି ବଜାରିମାନ ରେ ।୨। ଚତୁର୍ବର୍ଗଫଳ ପସରା ବସିଛୁ ଚଉବନ ଛନ୍ଦମାନ । ଷଡ଼ରଥୀ ତହିଁ ହାଟେ ବୁଲୁଛନ୍ତି ସୁମନ ତହିଁ କରଣ ରେ ।୩। ଦଣ୍ଡିଆ ତହିଁରେ ଚାଅଁଳଇ ଭୁଲ କରନ୍ତି ଏମାନ । ଟେକି ଦେଉଥାନ୍ତି ସୁହୃଦ ପଣରେ ଭକ୍ତି ମୁକ୍ତି ଅର୍ଥମାନ ରେ ।୪। ଠିକ ଅବାରୁ ନୃପ ହାଟକୁ ଗମିବ ପୂର୍ଣ୍ଣ ହେବ ବାଞ୍ଛାମାନ । ଠିକେ ରଘୁଦାସ ବାହୁଡ଼ି ଆସିଲା ବାଟେ ହେଲା ଭଣ ଭଣ ରେ ।୫।

---

ଛାଲ—ଯଣ୍ଡ୍ ।

ହରି ଚରଣେ ତୁ ଦୃଢ଼େ ଧ୍ୟାନ ଲଗା ରେ । ମନ ବଗା । ଆଁଗପଛ ଭବ ନାବହିଁ ଦଦବ ହେତୁ ଧରି କୂଳେ ଲଗା ରେ । ପଦ ।

ରାଗ ଅହଂକାର କପଟହିଁ ଛନ୍ଦ ବୁଝି ନ ବୁଝ ଅବୁଝା । ଏମାନେ ତୋ ଦେହେଁ କପଟେ ଅଛନ୍ତି ଘରଖଣ୍ଡି କଲେ ଭଙ୍ଗାରେ । ୧ । କାୟାର ଭିତରେ ପାଞ୍ଚନାଗ ଛନ୍ତି ପାଙ୍ଗେହେଁ ସେ ନବଯୁବା । ପଞ୍ଚଶ ଶ୍ରେଣୀ ଆ ପେଲ ଖେଳୁଛନ୍ତି ଢୋଢେ କଲେଣି ଅଲଗା ରେ । ୨ । ଶରୀର ଭିତରେ ପରବାସୀ ଅଛୁ ପରରେ ନୋହିଲୁ ଦେଖା । ଛାଡ଼ି-ଯିବ ବୋଲି ଡଗର କରୁଛୁ ତାକୁ ଯାଇଁ ବେଢ଼ୁଁ ଜଗାରେ । କୁସଙ୍ଗେ ନ ପଶ ସୁସଙ୍ଗରେ ବସ ସତପଥରୁ ଧରିଥା । ଦାସ ରଘୁନାଥ ମାରଣ ଅଟଇ ହରିନାମ ଅଯୋଗା ରେ । ୪ ।



ଛାଲ—ଅଠତାଳି ।

କାହିଁକି ବୋଲାଇଛ ବନବିହାରୀ ।
ମୁଁ ଅଜ୍ଞାନ ବଡ଼ ମୂଢ଼ ଥିଲି ଯାହା ଅନୁସରି । ପଦ ।

ହରିନାମ ଶୁ ପ୍ରକରି । ଶୁ ପ୍ରଗୀତାରେ ବିଚାରି । ନୟନେ ହେରି । ନଳନୀପତ୍ରରେ ଯେସନେ ନ ରହେ ବାରି । ରଖିବ କି ନ ରଖିବ ହୃଦପଦ୍ମରେ ବିଚାରି । ୧ । ଗଜେ ଅନୁଗ୍ରହ କରି । ଚେତେ ସଙ୍କଟରୁ ତାରି । ଦେଲେ ଉଦ୍ଧରି । ଛୟାଳିଶ ପଟଳରେ ଅଛୁ ମୁଁ ସାର କରି । ବଡ ଦାରୁଣ ହୋଇଲି ଦାବାଗ୍ନି ଜାତକରି । ୨ । ଭଣାରଣ୍ୟରେ ଭ୍ରମଣ । କରୁଛ ଯାହା ଆପଣ । ଯୋଗେ ଇମିରି । ଯୋଗିଜନ ନ ପାରନ୍ତି ସେ ଠାବ କରି । ସାଧନା ଅଙ୍ଗରେ ହିଙ୍ଗି ଆଦ୍ୟଶକ୍ତି ବଶ-କରି । ୩ । ଷୋଡ଼ଶ ଆଡ଼ରେ ଯାନ୍ତ୍ରୀ । ଦ୍ୱାଦଶ ଦ୍ୱାରରେ ମନ୍ତ୍ରୀ । ରଖିଛ ଠାରି । ଯିବ ବୋଲି ପାଞ୍ଚ ଅଛୁ ବାଇଶେ ଉଦେ ଗିରି । ବଡ ବିରାଳସ୍ଥ ସ୍ଥାନ ଛଡସ୍ଥାନରେ ସେ ପରି । ୪ । ଅଚ୍ଛନ୍ନୁ ଯେ ବିଷ୍ଣୁଦାନ । ଖେଳରେ ଯେସନେ ମୋହନ । ଦେଇଛ ହରି । ମୋହ

କର୍ମକୁ ଈଶ୍ବର ହେଲ କିପରି । ମାୟାଜାଲ ମେଲିଅଛ ଦେବ କି ଛେଦନ କରି । ୫ । ତାକତରକେ ଜାଗତ । କେହି ନ ପାଇଲେ ଅନ୍ତ । ଅନନ୍ତଗିରି । ଅବାରଣକୁ ବାରଣ ବାଣରେ ସରି । ବାଣରେ ଶୁଣିଲେ ହିନା ଭବଅଂଶର ଅଇରି ॥ ଦ୍ଵିଜ ଗଜସିଂଜ କହି । ଗୁମରେ ଅଛଇ ରହି । ମୁକୁନ୍ଦଧାରୀ । କି ସୁନ୍ଦର ରୂପ ଯେତୋ ଦଶେ କେଶରୀ । ରତ୍ନ ସିଂହାସନେ ଅଛୁ କିସ ମନରେ ବିଗିରି । ୨ ।

—o—

ତାଲ—ଛପକା ପହପଠ ।

ମନ ନ ମଜ୍ଜିଲୁ ତୁ ହରି କଥାରେ ।
ତୋର ଦୁର୍ଲ୍ଲଭ ଜନ୍ମ ଗଲା ବୃଥାରେ । ପଦ ।

ଏ ଧନ ସମ୍ପଦ ପୁତ୍ର ନାରୀ ମିଥ୍ୟାରେ । ଦୁଃଖର କାରଣ ସୁଖ ନାହିଁ ସଂସାରେ । ସବୁ ବୋଲୁ ମୋହରି । କେହି ନୋହେ କାହାରି । ସାତ ଖାତକ ପରି ଲାଗିଛୁ ଧରା ଧରି । ଉଡନ୍ତା ପକ୍ଷୀ ପରି ଜୀବ ଯିବ ବାହାରି । କି ଘେନି ଯିବୁ ଗଲେ କଥାରେ । ୧ । କହୁଅଛୁ ଶୁଣ ମନ ଏଥି ଉତ୍ତାରେ । ହରେକୃଷ୍ଣ ମହାମନ୍ତ୍ର ସାର ସଂସାରେ । ତୋ ଦେହ ନାନା କ୍ଲେଶ । ଯନ୍ତ୍ରିତ ମାୟାପାଶ । ବିଷ ମଣୁ ପୀୟୂଷ । ପୀୟୂଷ ମଣୁ ବିଷ । ତାର ନୋହେ ଆୟୁଷ । ସରୁଛି ତୋ ବୟସ । ରସରେ ମାତି ଉନମତ୍ତରେ । ଧର୍ମ କର୍ମ ପରମାର୍ଥ ସତ୍ୟ କଥାରେ । କାହାକୁ କି ଦେଇଅଛୁ ଜାଣୁ ତୁ ତାରେ । ଛଡ଼ ଯେ ଚକ୍ରବର୍ତ୍ତିମାନଙ୍କ ଯଶ କୀର୍ତ୍ତି । ସର୍ବଦା ସଜୀବତ ପୁରାଣେ କହୁଛନ୍ତି, ତୋ ତହୁଁ ହୀନ-ମତି । ହୋଇଲୁ ତୁ କୁମତି । ମାତୁ ଅସତ ସଙ୍ଗେ ବୃଥାରେ । ୩ । ଯୋଡିଲେହେଁ ଯେତେ ତୁହି ମାଲ ମତାରେ । ମଲେ ଗଲେ ତୋତେ ଦେବେ ଛିଣ୍ଡା କନ୍ଥାରେ । ଗୁରୁ କୃଷ୍ଣ ବୈଷ୍ଣବ । ସଙ୍ଗତେ କର ଭାବ । ଗଲେ ଲଭିବୁ ଲାଭ । ତରିଯିବୁ ଏ ଭବ । କାଲ ଦେଖି ଡରିବ । ଦୂରୁଁ ପଲାଇଯିବ । କହିଲେ ନ କରୁ ଏ କଥାରେ । ୪ । କହେ ଭାଗ୍ୟାନନ୍ଦ ନନ୍ଦସୁତ ଚିନ୍ତାରେ । କର ମନ ରସ ଦବା ଏହି

ଦ୍ୱାନ୍ତାରେ । ତ୍ୟଜ ମାୟା କପଟ । ନାନାବ ଛନ୍ଦ କୁଟ । ଛୁଟିଗଲେ ଦେହ ଘଟ । ସବୁ ସବୁ ନଷ୍ଟ । ସେ ଯେଉଁ ବଂଶୀବଟ ଇଥିମଧ୍ୟେ ଲକ୍ଷ୍ମୀଟ । ତା ପାଦେ ଲଗାଅ ତୁ ମଥାରେ ! ୫ ।

—o—

ରାଗ ଯତି ।

ସ୍ୱାମୀ ହେ କହ ବିଷମସନ୍ଧ ।

କେଉଁ କମଳରେ ଭ୍ରମର ବନ୍ଧ । ପଦ ।

କାଳିନ୍ଦ୍ରୀ ହ୍ରଦରେ ପାରୁଆବସା । ସେଠାରେ ସିଂହକୁ ଗିଳୁଛି ଶଶା ॥
ହଂସ୍ତ୍ରୀ ମଣ୍ଡୂକରେ ଲାଗିଛି ଯୁଦ୍ଧ । କମଳେ ଫୁଟିଛି ଯେ କୋକନଦ ॥
ଦେଉଳ ରହିଲ ନେଉଳ ତୁଣ୍ଡେ । ଶଙ୍କର ରହିଲ ଈଶ୍ୱର ମୁଣ୍ଡେ ॥
ଶୂନ୍ୟ ମଣ୍ଡପରେ ବାଜୁଛି ବୀଣା । କେଉଁ ଠାରେ ଅଛୁ ଗୋପପାଠଣା ॥
କହଇ ଗୋରକ୍ଷ ଶୁଣ ରେ ବାଇ । ସଦଗୁରୁ ସେବା କଲେ ତା ପାଇ ॥

—o—

ରାଗ—ଏକତାଳି ।

ସୁମନ ଆରେ ମୋ ବୋଲ କର ସୁସଙ୍ଗେ ସୁପଥେ ଯାଅ ରେ ।
ଅଗାଧ ଜଳ । ନ ପାଇ ସ୍ଥଳ । ହରିନାମ ମୁଖେ ଗାଅ ରେ । ପଦ ।

ସୁମନ ପଥାକୁ କୁମନ କଣ୍ଟା ବିନ୍ଧୁ ଜଗଇକି ଯାଅ ରେ । ହେତୁ କେଉଁଠି ମଙ୍ଗକୁ ଘୁଞ୍ଚା ଆଗପଛ କରି ବାହାରେ । ଦ୍ୱିଗୁଣାମାରି ରିପୁ ଅନ୍ଧାରି ଅଠ ଆଖଡ଼ାକୁ ଚାହାଁ ରେ । ଯମ ଯେମନ୍ତେ ଯିବ ପରଛେ ଯିବା ଆସିବାର ଚାହାଁରେ । ୨ । ଷଢଅଇରି ଛରସା ଭରି ଭଜ ବଣିଜରେ ଥାଅରେ । ସାଧୁ ସଙ୍ଗରେ ବଣିଜ ଯେତେ ମୂଳରଖି ଲାଭ ଖାଅ ରେ ॥ ନ କର ହେଳା ବୁଡିବ ଭେଳା ବହିବଟି ବଡ଼ ବାଆ ରେ । ଯଶୋବନ୍ତ ଦାସ ପାଦରେ ଶରଣ ନୋହିବେଟି କେହି ସାହା ରେ । ୪ ।



ତାଳ—ଆଡ଼ଖେମଟା ।

ଏକ ଶିଷ୍ୟରୁ ଛନୋଟି ଗୁରୁ ।
ଶୁକଦେବ ଜନ୍ମ ହେଲା ତହିଁରୁ । ପଦ ।

ଲୀଳା ହେଲା ଷୋଳ କଳାରୁ ପ୍ରେମ ହେଲା ଅର୍ଦ୍ଧ ଅଙ୍ଗରୁ । ଅର୍ଦ୍ଧେକ ଜଳ ଅର୍ଦ୍ଧେ ଅନଳ । ବ୍ରହ୍ମା ଜନ୍ମ ହେଲେ ତହିଁ ମଧ୍ୟରୁ ॥ ଯୋଗମାୟା କଳପତରୁ । ଯୁଗଟି ଜନମ ହେଲା ତହିଁରୁ । ଅଙ୍ଗେ ବିରାଟ କରନ୍ତି ନାଟ ଧୂର୍ଜଟି ବଜାନ୍ତି ଷୋଳ ଡମ୍ବରୁ । ୨ । ସିଦ୍ଧିକରି ବିଧି ମୁଖରୁ ଋଦ୍ଧିକରି ପାଇଁ ସେଠାରୁ । ପ୍ରତାପସିନ୍ଧୁ ପରମବନ୍ଧୁ ଉଚ୍ଛୁଳା ଯନ୍ତ୍ରୁ ମଧ୍ୟରୁ ॥ ଆଦି ଅନାଦିଙ୍କ ଆଜ୍ଞାରୁ ଏହା ସହି ରହିଛି ମେରୁ । ଭଣେ ଭରତ ପରମତତ୍ତ୍ୱ ତୋହ ମନ ତୋତେ ତାରୁ ନ ତାରୁ । ୪ ।

—୦—

ତାଳ—ଆଡ଼ଖେମଟା ।

ଷଟ୍‌ଚକ୍ର କେବଣଠାର, ହାଟ ବସେ କେଉଁଠାର, ଶକତି ରହିଛି କାହିଁ । ଶିବ କାହାକୁ ଜପଇ । ମନ ସତ କହ । ଯାଇ ଯାଇ ବୁଲୁଅଛୁ କେଉଁ ଦିଅଁ । ୧ । ବିଷମ ଅର୍ଗଳ ଦ୍ୱାର । ଲୋଭ ମୋହ ମାୟା ତାର । ରାସ ଉତ୍ସବ ଲାଗିଛି । ଜାଣିଥିଲେ କହ କିଛି । ମନ ମହା ସନ୍ଧି । ମତ୍ତଗଜ କେଉଁଠାରେ ଅଛି ବନ୍ଧି । ୨ । ଭାଗୀରଥୀ ଗଙ୍ଗା ହୋଇ । ବାରୁଣୀ ପଡ଼ୁଛି ଯହିଁ । ଫୁଟିଛି କେବଣ ପୁଷ୍ପ । ପାଖୁଡ଼ାରେ ନାହିଁ ବାସ । ମନ ଅନୁସର । ଅନାମିକ ଦିଅଁ ଅଛି କେଉଁଠାର ॥ ଧ୍ୱନି କାହିଁରୁ ହୋଇଲା । ଦିବାନିଶି କାହିଁ ହେଲା । ଥୋକେ ଘରେ ଆଉଯାଉ । ତ୍ରିଗୁଣେ ହୋଇ ଯନ୍ତ୍ରିତ । ମନ ନାମ କହ । ନାମକୁ ଜପୁଣ ଅଛି କେଉଁ ଦିଅଁ ॥ ଡାକୁଣୀ ଭିତରେ ବାସ । ଡୋଳା ଗୋଠା ପଞ୍ଚଦଶ । ଠଣା କରି ରହିଅଛି ଝାଣି ଯୋଗୀବ ବାଛି । ମନ ଅଣାମୃତ । ଅଣାକାରେ ମିଶିଅଛି ବୀଣାଯନ୍ତ୍ର । ୫ । ଝାଡ଼ର ଭିତରେ ଦିଅଁ । ଜାତ କି ଅଜାତ କହ । ଛୁଡ଼ାହୋଇ ଏକପାଦ । ଶୈର ହୋଇ କରେ ନାଦ । ଘର ଓଗାଢ଼ିପରେ ।

ଅନନ୍ତ ଗୁପତ ଫଣି କେଉଁଠାରେ ॥ ଘରେ କି ବାହାରେ ଦିଅଁ । ଗୁପତ ନ କରି କହ, ଝୁଣ୍ଟିଥିଲେ ଗୁରୁପାଦ । କହିବୁ ଏଥିର ଭେଦ । ବେନି କର ଯୋଡ଼ି । କହେ ଗଣ୍ଡାଧର ସାଧୁପାଦେ ପଡ଼ି । ୭ ।

ଢାଳ—ଆଡ଼ଖେମଟା ।

କାଳନ୍ଦୀହ୍ରଦେ କମଳ ଫୁଟିଛି । ଖିନ୍ନନାଳେ ନିରଞ୍ଜନ ଖେଳୁଛି । ଗୋଲହାଟ ଯେ ଗଗନଶିଖରେ । ଘଟେଶ ପୁରୁଷ ବିଜେ ସେଠାରେ ହୋ । ବାଇମନ । ଉଦେଅସ୍ତ ହୁଇତାଇ । ଜୀହାନ୍ତା ବହନ୍ତା ଶୋରତା ବକତା ଏକାଘରେ ଭିନ୍ନାଭିନ୍ନ । ୧ । ଛନ୍ଦ ରଉବନ ଛପନେ ରଖ । ଜୀବ ପରମ ଏକାଘରେ ଦେଖ । ଝର ଝର ତିନିଝର ବହୁଛି । ନାବ ଖଞ୍ଜାଇ ତରାଇ ଧରୁଛି । ବାଇମନ । ଟେକି ତୁ ବାହା ଉଜାଣି । ଠୁଲଶୂନ୍ୟରୁ ଆଉଯାଉ ହେଉଛି ଗୁରୁସେବା ଥିଲେ ଜାଣି । ୨ । ଡିଗର ଫୁଟିଛି ତାତୁ ଦୁଆରେ । ଢେଉ ପବନ ମାରୁଛି ନାସାରେ । ଅନହଦରୁ ଶବଦ ଶୁଭୁଛି । ବିପୁରା ବିପୁରା ବାସ କରୁଛି । ବାଇ-ମନ । ଥିର କର ପଞ୍ଚମନ । ଦେଉଳ ଦୁଆରେ ଦେବତା ରହିଛି ପାରିଲେ କର ଦର୍ଶନ । ୩ । ଧ୍ୟାନକୁ ନେଇ ନାସାରେ ରଖିବୁ । ନାସିକାରେ ନିରଞ୍ଜନ ଦେଖିବୁ । ପଲକ ନ ପାଡ଼ି ରହିବୁ ଯେବେ । ଫୁଙ୍କାବନ୍ଧେ ନୃତ୍ୟଦେଖିବୁ ତେବେ, ବାଇମନ; ବଟଯୁଟେ ବିଜେ ହରି । ଭକ୍ତଙ୍କୁ ଅନୁସରି ଅଛନ୍ତି ଘଟେ ଘଟେ ଛନ୍ତି ପୂରି । ୪ । ମୁକୁନ୍ଦ ମାଧବ ମଧୁ ସୂଦନ । ଜୀବପରମ ନୋହେ ଭିନ୍ନାଭିନ୍ନ । ଯଉରି ଶବଦ ଶୂନ୍ୟରୁ ଆଣି । ଲହରି ମିଶାଇ ମାରୁଛି ଫେଣି । ବାଇମନ । ବଙ୍କନାଳେ ଆତଯାତ । ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ରହିଛି ଜପୁଅଛି ପରମାର୍ଥ । ୫ । ସକାର ମକାର ଅକାର ତିନି ଓଁକାର ଉପରେ ବେଦରକ୍ଷିନି । ହରି ଆଠଅକ୍ଷର ବ୍ରହ୍ମାଦି ଗିରି । କ୍ଷୀଣ ରିକ୍ଷର ସ୍ୱୟଂ-ଅକ୍ଷର । ହୋ ବାଇମନ । କ୍ଷମାକର ମୋର ଦୋଷ, କ୍ଷମେ ଅଧମ ଗଣ୍ଡାଧର କହଇ ପଦ୍ମପାଦ ତଳେ ଆଶ । ୬ ।

ଚାଲ—ଖେମଟା ।

ଶୂନ୍ୟେ ଭ୍ରମର ଖେଳ ଲଗାଇଛୁ ଜୀବ ସଙ୍ଗର ।
ସହଜ ସହଜ ସାଧନ ସାଧିଲେ ଅମର । ଘୋଷା ।

କହେ ମନଉଇଚନ ଶୁଣ ତୁ ମୋର ବଚନ ଗୁରୁକହିଛନ୍ତି ଭେଦ ବାଟ । ଅଲେଖ କମଲପରେ ମୃଣାଳସୂତ୍ର ମଧ୍ୟରେ ଧୂନିକରି କରୁଛନ୍ତି ନାଟ ସେ । ୧ । ନିଜ ଗଗନରୁ ଜଳ ଅମୃତ ମରୁଛ ଠୁଲ ଦୃଢ଼େ ଧର ଏହି ପଞ୍ଚମୁଦ୍ରା । ତ୍ରିବେଣୀ ଶିଖରେ ରହି ଦର୍ଶନ କର ତୁ ଯାଇ ଯହିଁ ନାହିଁ ମହାକାଲନିଦ୍ରା ସେ । ନିରଞ୍ଜନ ନିରାକାର ନିରତେ ଭକ୍ତ ଥକାର ନେତ୍ରପଥୁଁ ନ ଛାଡ଼ନ୍ତି କ୍ଷଣେ । ଅଖଣ୍ଡ ନିର୍ମଳଜ୍ୟୋତି ଜ୍ୟୋତି ପରେ ଯାଉଛନ୍ତି ଯେଣିକି ଚାହିଁଲେ ଦିଶେ ତେଣେ ସେ ॥ ଦଶଦ୍ୱାର ମଧ୍ୟେ ସାର ତହିଁ ଅଛି ଏକ ଦ୍ୱାର ତହିଁରେ କବାଟ ଅଛି ପଡ଼ି । ରଘୁନାଥ ଭାବେ ଭଣି ଗୁରୁ କୃପାକଲେ ଜାଣି ପଶି ଯିବୁ ସେହି ଦ୍ୱାର ଫେଡ଼ି ସେ । ୪ ।



ଚାଲ—ଖେମଟା ।

ବନ୍ଦୀ ମାୟାରେ ଜୀବ ନୋହେ ଜାହାର ।
ଦିନେ ନ ଭଜୁ ରାମ କୃଷ୍ଣ ଛାହାର । ପଦ ।

ଯେତେବେଳେ ମାତାଗର୍ଭେ ହେଲୁ ସଞ୍ଚାର । ଅଣାକାର ଭୂମି ସେ ଯେ ନାହିଁ ଆକାର । ପ୍ରଥମ ମାସେ ତୁ ଯେ ହେଲୁ ଧବଳବର୍ଣ୍ଣ । ଦ୍ୱିତୀୟ ମାସେ ତୁ ଯେ ଜଳେ ଯେସନେ ମୀନ । ତୃତୀୟ ମାସେ ତୁ ଯେ ଶୂନ୍ୟେ ମେଲିଲୁ ଡ଼ାଳ । ଚତୁର୍ଥେ ଅସ୍ଥି ଖଞ୍ଜା ତୋହର । ୧ । ପଞ୍ଚମେ ନାଭିକମଳ କଲା ଭିଆଣ । ଷଷ୍ଠରେ ବାସ୍ତୁରି ନାଡ଼ୀ ଖଞ୍ଜିଲା ଜାଣ । ସପ୍ତମେ ନାସା ଜିହ୍ୱା ମୁଖ ଯେ କର୍ଣ୍ଣ ଜାଣ । ଚକ୍ଷୁ ଭ୍ରୂଲତା କାମକମାଣରେ ନିର୍ମାଣ । ଗଙ୍ଗା ଯମୁନା ନଦୀ ବହଇ ଅନୁକ୍ଷଣ । ଅପେ ମନକୁ କଲା ସ୍ଥିର । ୨ । ଅଷ୍ଟମେ ଅଙ୍ଗୁଷ୍ଠି ହସ୍ତ ପାଦ ଖଞ୍ଜିଲା । ନବମାସେ ଉମଡ଼ାକୁ ଚାଙ୍କୁଣି ଦେଲା । ଦଶମାସରେ ଶେଷ କଲା ହୋଇ ହରଷ । ସ୍ତୁତି ଯେ କଲୁ ତୁହି ଭୋ ଦେବ ନନ୍ଦ ଶିଷ୍ୟ ।

ଯାଇ ମର୍ତ୍ତ୍ୟମଣ୍ଡଳେ ମୁହିଁ କରିବି ବାସ । ତୋ ନାମ ଗାଉଥିବି ସୁମରି । ୩ । ଯେଉଁ ବକ୍ଷାଣି ତୋତେଟି କଲ ଭିଆଣ । ସେହି ତୋ ଦେହେଁ ରହିଲା ଏହା ତୁଳାଣ । ରକ୍ଷିଲା ଦଶବାଟ ଲଗାଇଲା କବାଟ । ସୁଷୁମ୍ନା ଦୁଆରେ ରହିଲେ ନନ୍ଦଘଟ । ଯେବେ ପାଇବୁ ଭେଟ ମାୟାକୁ ତୁହି କାଟ । ଗୁରୁ ସେବଣ ଦେଖ ଘାରି ॥ ଜନମ ହୋଇ-ପଡିଲୁ ମର୍ତ୍ତ୍ୟମଣ୍ଡଳ । କୁଆଁ ବୋଲନ୍ତେଣ ସବୁ ଗଲା ପାସୋର । ଅନ୍ନୁଭଶାଳେ ରହି ହରି ଭଜିଲୁ ନାହିଁ । ପାଞ୍ଚ ବରଷ ଗଲା ବାଲ-ଭାବରେ ବହି । ଦଶ ବରଷେ ଧୂଳିଘର ଖେଳିଲୁ ତୁହି । ବାର ବରଷେ ବସ୍ତ୍ର ପିନ୍ଧୁ ହରଷ ହୋଇ । ତେବେ ନ ବୋଲୁ ମୁଖେ ଶ୍ରୀହରି । ୫ । ପନ୍ଦର ବରଷେ ହେଲୁ ଅମରମତା । କୋଡିଏ ବରଷେ କଲୁ କାମିନୀ ଚିନ୍ତା । କାମିନୀ ସଙ୍ଗେ ରହି ଦିନ ହରିଲୁ ତୁହି । ସେ ରୂପେ ଗଲା ତୋର ଯୁବାବୟସ ବହି । ହରି କଥାକୁ ଦିନେ ମନେ ନ କଲୁ ତୁହି । ହେବୁ କେମନ୍ତେ ଏ ଭବୁଁ ପାରି । ୬ । ବୃଦ୍ଧବୟସ ଯେ ଏବେ ହେଲା ତୋହରି । ଅବଶ୍ୟ ଦେଖିବୁ ଥରେ ଶମନପୁରୀ । କହଇ ଯଶୋବନ୍ତ ଗୁରୁଙ୍କୁ ସେବାକର । ସେ ନାମ ଧରି ହୃଦେ ଭବୁଁ ହୋଇବୁ ପାର । ବସିବୁ ବଇକୁଣ୍ଠ ଅବୋରି । ୭ ।



ତାଲ—ଆଠତାଳି ଯତି ।

ରାଧେ କୃଷ୍ଣ ରାଧେ କୃଷ୍ଣ ରାଧେ କୃଷ୍ଣ ରଟ ରେ ।
କେତେଦିନ ରହିବ ତୋ ମାଟି-ପିଣ୍ଡ ଘଟ ରେ । ପଦ ।

ଧନ ଦାରାସୁତ ଦେଖି ମନ କରୁ ମୋଟ ରେ । ମୋର ମୋର ହୋଇ ଛୁଡଅଛୁ ଧର୍ମବାଟ ରେ । ଯମୁନା-ତଟ ନିକଟ ଅଟେ ବଂଶୀ-ବଟ ରେ । ତ୍ରିଭଙ୍ଗଭଙ୍ଗିମା ଛନ୍ଦେ ଉଭା ନନ୍ଦଘଟ ରେ । ୨ । ହରେ କୃଷ୍ଣ ମହାମନ୍ତ୍ର ଅନୁକ୍ଷଣେ ରଟ ରେ । ରାମନାମ ଖଣ୍ଡା କରି ପାପ ତାପ କାଟ ରେ । ୩ । ଭାବେ ଭାଗବତ ବାଣୀ ଶୁଣ କର୍ଣ୍ଣପୁଟେ ରେ । ଭାବରେ ଭଣିଲେ ଏହା ଅବଧୂତ ଘଟ ରେ । ୪ ।

ଢାଳ—ଅଠତାଳ ଯତ୍ର ।

ମାନଭୃଞ୍ଜାରଣ କର ହେ ତାରଣ
ଶରଣ ମୁଁ ତୁମ୍ଭ ପାଦ ତଳେ । ପଦ ।

ଅନାଥର ନାଥ ନୀଳଗିରିନାଥ ଜଗନ୍ନାଥ ନାମ ନୀଳାଚଳେ ।
ମହାଦଧିକୂଳେ କଳ୍ପବଟମୂଳେ ବିଜେ କରିଛ ବଡ଼ ଦେଉଳେ ।୧।
ଲକ୍ଷଯୋଜନରେ ବାରଣ ଡାକିଲା ତା ଡ଼ାକ ଶୁଣିଲ ପଣାଖେଳେ ।
ମାରକଣ୍ଡ ଋଷି ଯାଉଥିଲେ ଭାସି ଉଦ୍ଧରି ଧଇଲ ବାହୁବଳେ । ୨ ।
କିଷ୍କିନ୍ଧ୍ୟାକୁ ଗଲ ବଳୀ ବିନାଶିଲ ବନ୍ଧ ଯେ ବାନ୍ଧିଲ ସିନ୍ଧୁଜଳେ ।
ଲଙ୍କାରେ ରାବଣ ବଧିଲ ଆପଣ ଜନକନନ୍ଦନୀ ସୀତା ଛଳେ । ୩ ।
ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ ଭୋଜନ କଲ ବିଦୁର ଘରେ ।
କୁରୁ ସଭାତଳେ ପଞ୍ଚାଳୀ ଡାକିଲା କୋଟିବସ୍ତ୍ର ଦେଲ ଅବହେଳେ ।
ବନ ପୋଡ଼ିକାଳେ ଘୋର ଦାବାନଳୁ ଉଦ୍ଧାରି ରଖିଲ ବ୍ରଜବାଳେ ।
ଭଣେ ଉପଇନ୍ଦ୍ର କବିକୁଳଚନ୍ଦ୍ର ଶରଣ ମୁଁ ତୁମ୍ଭ ପାଦତଳେ । ୫ ।

ଢାଳି—ଅଡ଼ଖେମଟା ।

ବାଇମନ ଅବନାବନ । ଅବନା ବନ୍ଧିଲେ ଅମିଶା ମିଶିବ
ଅମାପରେ ମାପ ହେବ ତୋ ଧନ । ପଦ ।

ଅମାବସ୍ୟା ଭଣୀରେ ଷୋଳ କଳା ଚନ୍ଦ୍ର ସର୍ବଦା ଭଣୀରେ ରବି ଦର୍ଶନ । ଅହର୍ନିଶା ଯହିଁ ପ୍ରଦୀପ ଜଳୁଛି ଦୀପ ତେଜେ ଅଣଶ୍ୱାସ-ପବନ । ୧ । ଭର୍ଝର କନ୍ଦରେ ହଂସ ପହଁରୁଛି ଅଗାଧ ଜଳେ ହରିଣୀ ଆସନ । ଶଶ ଛୁଆ ଯେଣ୍ଡ ଖେଳୁଛି ହରିଣୀ ବାଘ ଆଣିତାକୁ ଦିଏ ଭୋଜନ । ୨ । ଭଣବନ୍ଦି ଘରେ ନାମ ସଙ୍କୀର୍ତ୍ତନ ଶବଦରେ ନାହିଁ ହରିଜଭନ । ଶୁଦ୍ଧମେଘେ ମିଳ ବୃଷ୍ଟି କରୁଛନ୍ତି ମରୁଡ଼ରେ କୃଷି ହେଲା ଦହନ ।୩। ଶୂନ୍ୟରେ ଶୂନ୍ୟରେ ଦେଉଳ ହୋଇଛି ଦେଉଳ ଗୋଟିକ ଅଯେ ଭର୍ମାଣ । ଭଲା ସେ ବିନ୍ଧାଣୀ ଗଢ଼ିଅଛି ପୁଣି ଅମୁହାଁ

ଦେଉଳେ ଦେଅଁ ଦର୍ଶନ । ୪ । ଈର୍ଷନର ଘର କହିଲେଲେ ମୋର ମୋର ବସି ଦାଣ୍ଡେ କରେ ରୋଦନ । ଧନ୍ୟ ହେଲେ ମୋର ହୁଅନ୍ତା ଅମର କହଇ ଅତ୍ୟନ୍ତ ମୂଢ଼ ଅଜ୍ଞାନ । ୫ ।



ଚାଳ—ଖେମଟା ।

ଭୁଲମନ ଭୁଲୁ କହିଁକି । ମରିଯିବୁ ବୋଲ ଜାଣୁ ନାହିଁକି । ପିଣ୍ଡ ଯେତେବେଳେ ପ୍ରାଣ ଛାଡ଼ିଯିବ ଯୋଡ଼ିଯିବେ ତୋତେ ମଡ଼ା ଭୂଇଁକି । ପଦ ।

ମାତାଗର୍ଭେ ଥିଲୁ ଭୁହି ଯେତେବେଳେ ସତ୍ୟ କରିଥିଲୁ ଯହିଁ-ପାଇଁକି । ଶୂନ୍ୟ ପୁରୁଷାସି ନରଲୋକେ ମିଶି ସତ ଶାନ୍ତି ଦୟା ମନେ ନାହିଁ କି । ୧ । ନାମକୁ ହେଜ ତୁ ହିତତ୍ତ୍ୱବୀଜ ସେ ନାମ ଧାର-ଣାରେ କହନ୍ତୁ ଡାକି । ମିଳଣ ସନ୍ବରନେବେ ତତପର ଦୋ ଗଳାରେ ଦେଇ ଦଉଡ଼ିକି । ୩ । ନାନାତୀର୍ଥେବ୍ରତ କରୁଥାଉ ମନ ସଂସାର ଲୋକଙ୍କର ଦେଖା ଦେଖି । ବଢ଼ ଛଡ଼ା ବଡ଼ା ଥାଲ ମାଜ ସବୁ ଉଦର ଲମନ୍ତରେ ଠକାଠକି । ପଡ଼ ଏ ଭବରେ ଦଦରା ନାବରେ ନାହିଁକି ହେଉଅଛୁ ଝିଙ୍କାଝିଙ୍କି । ଛୁଟିବ ଅଝାଲ ବୁଡ଼ ଯିବ ନାବ ଦାସ ବୃନ୍ଦାବନ କହେ ଡରକି । ୪ ।

---

ଚାଳ—ଛପକା ।

ଆରେ ମନ ମୋର ।

ମୁଁ ଯେ କହୁଛୁ ସ୍ୱରୂପ ତୋଆଗର । ପଦ ।

ଧୂଳ ଗୃହପାଖ ଜ୍ୟୋତ ଘର । ଧବଳ ରୂପକୁ ଲକ୍ଷ୍ୟ କର । ଧାତ୍ରି ଅଛୁ ଜୀବ ପରମ ସଙ୍ଗତେ ଧାପ କରିଅଛୁ ନିରନ୍ତର । ୧ । ଦେଉଳ ଦୁଆରେ ଦେଅଁଘର । ଦେଅଁ ପୂଜିବାକୁ ତତପର । ଦେଉଳେ ପଶିଲେ ଦେଅଁ ତୁ ଦେଖିବୁ ଦୃଷ୍ଟିରେ ଦେଖିବୁ ନିରାକାର । ୨ । ତ୍ରିକୁଟେ ତ୍ରିବେଣୀ ତ୍ରିନିଧାର । ବହନ୍ତା ନନ୍ଦା ବିଲୟେ ନିକର । ବଙ୍କୁନାଳପାଣି

ଟେକନ୍ତେ ଉଜାଣି । ଉଡଯିବ ତୋର ହଂସାଘର । ୩ । ଧ୍ୟାୟି ଗୁରୁପାଦେ ଆଶ୍ରେ କର ଫିଟିଯିବ ଭବଭୟ ତୋର । ଭଜ ନ ପାରିଲେ ପାମର ଅଚ୍ୟୁତ । ଭୁଗାରି କରୁଛୁ ନାରଖାର । ୪ ।



ତାଳ—ଖେମଟା ।

ଏକା ଗୁରୁ ସିନା ଜଗତେ ବ୍ୟାପିଛୁ ଆନଗୁରୁ କର ହେଲା ।
ଅନାମରୁ ନାମ ଜନମ ହୋଇଣ ଭବରେ କରଇ ଲୀଳା । ପଦ ।

ଥାଇ ନ ମିଶଇ ବ୍ରହ୍ମ ଅଟେ ସେହି ନ ଯେଉ ହୁଅନ୍ତି ବଣା । ସତ ରଜ ତମ ଅନାମୁଁ ଜନମ ସବୁଠାରେ କରେ ଠଣା ॥ ଅରୂପାନନ୍ଦ ରୂପ ହୋଇଅଛୁ ଦେଖ ଲୋଚନ ଦୁଆରେ ! ଅର୍ଦ୍ଧେକ ମାଇ ତା ଅର୍ଦ୍ଧେକ ଅଙ୍ଗେର ଏକରୂପ ପ୍ରକାଶରେ ।୨। ସେ ପଦ ଆଶ୍ରିତ କରି କଲେ ତତ୍ତ୍ୱ ତହିଁ ଭିନ୍ନାଭିନ୍ନ ନାହିଁ । ପଚିଶ ରହିରୁ ସକଳ ଦେଖିରୁ ଥିଲେ ପୂର୍ବ ହେତୁ ରହି । ୩ । ଯେ ଜୀବ ପରମ ସଙ୍ଗେ କରି ସମ ଅଖିଳ ସଂସାରେ ଥାଇ । ବେଳୁଁ ବେଳୁଁ ପିତୁ ପ୍ରବଳ ହୁଅଇ ଏଥିରେ ସଂଶୟ ନାହିଁ । ୪ । ଆପଣ ମହତ ବୋଲ ସିନା ଗ୍ରନ୍ଥ ଦେଖି ଦେଲେ ପଠିଆଇ । ଅଧମ ଅରକ୍ଷ ଅଟଇ ମୂରୁଖ ଏହା ସେ ଜାଣିବ କାହିଁ । ୫ । ଯାହା ସେ ଶୁଣିଲି ତାହା ଲେଖି ଦେଲି ଦୋଷ ମୋ କ୍ଷମା କରିବ । ଲେଖିଲ ଏମାନ ଜଗତେ ପ୍ରଧାନ ପଥକୁ ଯାହା ପାଇବ । ୬ ।

---

ତାଳ—ଛପକା ।

ବଙ୍କନାଳକୁ ଗଲ କହୋ ସୁମନ ।
ବ୍ରହ୍ମରନ୍ଧ୍ରୁ ବନ୍ଧୁଅଛୁ ପବନ । ପଦ ।

କଅ ଯେ କମଳ ସେ ଯେ କଜ୍ଜଳ ବର୍ଣ୍ଣି । କୃଷ୍ଣରୂପ ଅଟେ ସେ ଯେ ଦେଖ ପ୍ରମାଣ । ଖଅ ଯେ ଖର କ୍ରୋଧ ଗଅ ଗୁପତେ ତେଜ । ଘଅ ଯେ ଘଟେ ଘଟେ ଘୋଟିଅଛୁ ଅଗାଧ । ଙ ଯେ ଊର୍ମି ଧୂମ୍ରି

ଉପରକୁ ଶବଦ । ଗଅ ଗଡାଟି ଅଟେ ଗଦନ । ୧ । ଘଅ ଯେ ଘଡ଼ଘଡ଼ି ଡେରେ ନୟନ । ଙଇଲୀ ରାଧିକା ଯହିଁ କରନ୍ତି ଧ୍ୟାନ । ଜଅ ଜ୍ୟୋଇ ବଢ଼ଦା ଝଅ ଝରୁଛି ସୁଧା । ଞ ଯେ ନିରଞ୍ଜନ ନିରତେ କରେ ଧ୍ୟାନ । ଟଅ ଯେ ଟଙ୍କଧର ଟାଣେ ଅଛନ୍ତି ଯୋଦ୍ଧା । ଠଅ ଠାକୁର ଅଟେ ଜୀବନ । ୨ । ଡ ଯେ ଡୋଲା ପିଙ୍ଗୁଳା ଡେରେ ନୟନ । ଢରେ ଝଟିଥାନ୍ତି ସର୍ବ ଦେବତାଗଣ ॥ ତଅ ତୋରେ ଅମୃତ । ଣଅ ଯେ ଅନାହତ । ତ ଅଟେ ତରାଇ ତରିବାକୁ ମହତ । ଥଅ ଯେ ଥକା ଘର ତୋ ଚତ୍ର ଅମୃ କର । ଦଅଁ ଦେବତା କର ଦର୍ଶନ । ୩ । ଧଅ ଯେ ଧୂନି ଜଳୁଛି ରହିଛି ଶୂନ୍ୟ । ଧୀର ମତି ହୋଇ ବାରେ ଲଗାଅ ଧ୍ୟାନ । ନଅ ଅଟେ ଲଲାଟ । ପଥ ପରମ ମଠ । ଫଅ ଫଣି ଉଲଟେ । ଫୁଙ୍କା ବନ୍ଧୁକୁ ବାଟ । ବଅ ବଜ୍ରକିଳଣୀ ପଡଅଛୁ କବାଟ । ଭଅ ଭକତଙ୍କର ଜୀବନ । ୪ । ମଅ ଯେ ମଣି-ମୁକୁଟ ମସ୍ତକ ଚଢ଼ । ମହାମାୟା ସେହିଠାରେ ହୋଇଛି ଲୀନ । ଯଅ କେୟାଭ ଉପମା ଯୁବତୀ ରତି କାମ । ରଅ ରାଧିକା ରାମା ଲଅଟି ତରେ ଯମ । ବଅ ଅଟେ ଇଅଁଳା । ଶଅ ଅଟେ ପିଅଁଳା । ରତୁସମ ବୋଲାଇ ତରୁଣ । ୫ । ଷଅ ଯେ ସୁଷୁମ୍ନା ଷାହାରି ସ୍ଥାନ । ଶେଷ ଦେବ ସିଂହାସନେ ସଦା ଶୟନ । ସଅ ଛନ୍ଦଇ ବାଣ । ଶରକୁ କରି ଟାଣ । ଅହ ଓଁକାରୁଅଛୁ ହଲାଉଛି ନିର୍ଗୁଣ । କ୍ଷୁଦ୍ର ଗଣ୍ଡାଇ କହେ ଅଜ୍ଞାନ । ୬ ।



ତାଳ—ଯୋସ୍ତା ।

ବାଞ୍ଛୁ କେ ନାମ ଦେଲା ଦଇତ୍ୟାରି ଦୟାନିଧି । ଦଇତ୍ୟାରି ଦୟା-ନିଧି ଦୟାକୁ ରାମହରି । ନିର୍ଦ୍ଦୟ କିପାଁ ହେଲ ନିରବଧି । ପଦ । ଭକ୍ଷଣ ଯେ ପାଦାମ୍ବୁଜ । ହେଲେ ତରିଗଲା ଗଜ । କାହୁଁ ଫୁରିଲା ତାର ବଳ ବୁଦ୍ଧି । ୧ । ତାରିଲ ପ୍ରହଲ୍ଲାଦ । ଭକ୍ତପାଇଁ ବିଷାଦ । ସ୍ତମ୍ଭ ବାହାରି ତା ପିତାକୁ ବଧି । ୨ । ଗୋପେ ରକ୍ଷି ଗୋକୁଳ । ଗିଳିଲ

ହେ ଦାବାନଳ । କଲ ଗୋପୀଙ୍କର କାମନା ସିଦ୍ଧି । ୩ । କହେ ଖାଲିବେଗ ହୀନ । ଏହି ମୋର ନିବେଦନ । ସେ ପାଦେ ରତି ଥିବୁ ନିରବଧି । ୪ ।



ରାଗ—ଆଡ଼ାଖେମଟା ।

ପାଦ ପାଣି ନାହିଁ ତାଙ୍କୁ ଧରିବ କିଏ ।
ଏମନ୍ତ ବ୍ରହ୍ମ ସ୍ୱରୂପ ଦେଖା ନ ଯାଏ । ପଦ ।

ନାହିଁ ତାଙ୍କ ପେଟ ଅଣ୍ଟା, ଫିଟାଇ କହୁଛି ଗୋଟା । ନର ଦେହ ବହି ତାଙ୍କୁ କଳିବା ନୁହେ । ତାଙ୍କ ପରି ଶାନ୍ତପଣେ । ନାହିଁ ତ୍ରିଭୁବନେ ଜଣେ, ନିନ୍ଦା ସ୍ତୁତି ହାନି ଲାଭ ସକଳ ସହେ । ୧ । ଭକ୍ଷଣ ନାହିଁ ଆହାର । ରଜ ବୀର୍ଯ୍ୟରୁ ବାହାର । କ୍ଷୁଧା ତୃଷା କଲେ କ୍ଷୀର ନୀର ନ ପିଏ । ନ ଲାଗଇ ଅଙ୍ଗେ ଧୂଳି । ବିଗିଛି ଦଶାନ୍ତ ବଳି । ନିଦ୍ରା ଘୁମାଇଲେ ଉଷାଆସନେ ଶୁଏ । ୨ । ଇଚ୍ଛାରେ ଯାଆନ୍ତି ଭ୍ରମି । ଭକତ ଭାବକୁ ପ୍ରେମୀ । ଶୁଣି ଗୃହିଁବାକୁ ଚକ୍ଷୁ କର୍ଣ୍ଣ ନ ଥାଏ । ନାହିଁ ମୁଖ ଜିହ୍ୱା ନାସା । ଉତ୍ତର ନ ଦିଅନ୍ତି ଭାଷା । ଆଗ ପଛ ଜାଣି ଧୀରେ ସମୀରେ ରହେ । ୩ । ଉଲଟି ପାଲଟି ନୋହି, ମହାଶୂନ୍ୟ ଶୂନ୍ୟ ଦେହୀ, ମୁଖବାଟେ ଜିହ୍ୱା କଣ୍ଠେ ବଖାଣି ନୋହେ । ସଦା ଜ୍ୟୋ ପୂର୍ଣ୍ଣାନନ୍ଦ । ପାଇଲେ ଚରଣେ ବନ୍ଦ । ନିରନ୍ତରେ ସେ ଅକ୍ଷୀତ ଧୂଭରେ ଭେଦ । ୪ । ନାହି ତାଙ୍କ ବର୍ଣ୍ଣ ଚିହ୍ନ । ଅଶେଷ ରୂପରୁ ଭିନ୍ନ । ସକଳ ଧର୍ମ ବିଧାନ କରନ୍ତି ନ୍ୟାୟେ । ଆସିବା ଯିବା ହେଉଛି । କରି ସବୁ କରାଉଛି । ଭଣୀକାମଯୋଗେ ନିଜ ନାମକୁ ଧାଏ । ୫ । ସେ ବ୍ରହ୍ମର ତେଜ ଝାସେ । ରହି ନ ପାରଇ ପାଶେ । ନିଷ୍କାମପଥରେ ଏକା କରିଛି ଲୟେ । ଗୀତରେ ଭୀମ କହଇ । ପୂର୍ବ ଦଶେ ଇନ୍ଦ୍ର ରହି । ଦୁଃଖ ସୁଖ ଜଣାଇବି ଭେଟିଲେ ପାୟେ । ୬ ।



### ଢାଳ—ଛପକା ।

ଆରେ ବାଇବର । ମିଛ ପସରାକୁ ବୋଲୁଅଛୁ ମୋର । ପଦ ।

ନଳିନୀପତ୍ରରେ ଯେସନେ ନୀର । ପବନ ବହିଲେ ଢଳଢଳ । କାହିଁରେ ମାଇଛୁ କିଛୁ ନ ବୁଝୁଛୁ ଜଳ ବିମ୍ବ ପ୍ରାପ୍ତ ଜୀବ ତୋର । ଜନନୀଜଠରେ ଥିଲୁ ରହି । କି କି ଆଣିଥିଲୁ ସଙ୍ଗେ ବହି । ଯିବା-ବେଳେ ତୋର ସଙ୍ଗେ କେ ନ ଯିବେ ଯିବୁ କାହାସଙ୍ଗେ ଏକା ହୋଇ । ୨ । ଏଗାର ଦିନକୁ ଲମ୍ଫକର । ବନ୍ଧୁ ବାନ୍ଧବାଦ ହେବେ ମେଳ । ତୋର ଲାଗି ମେଳା ମହୋତ୍ସବ କର ବାରଦିନେ ଯିବେ ଯେଝାଘର । ୩ । ପିତା କାନ୍ଦୁଥିବେ ବସି ଘରେ । ପୋଷଣାହାସ ମୋ ଗଲା ଦୂରେ । ଗର୍ଭଧାରି ତୋର ବସି କାନ୍ଦୁଥିବ କ୍ଷୀର ଦେଇ-ଥିଲି ତୋ ତୁଣ୍ଡରେ । ୪ । ବାଲବନ୍ଧଠାରେ କଲୁ ଘର । ମାରିବ ଲହରୀ ହେବ ଜଳ । ନବୀନ ବାଇଆ ଜଳରେ ଭାସୁଛି ସାଧୁଜନ-ମାନେ ପାରି କର । ୫ ।



### ଢାଳ—ଆଡ଼ଖେମଟା ।

ଅହେ ପ୍ରଭୁ ଶ୍ରୀମହାବାହୁ । ଶରଣ ଯୋଦର ନୋହିଲେ ଆଉ । ପଦ ।

ଦିନୁ ଦିନ ଦୁଃଖ ହେଲା ଅଛରେକ ବଢ଼ୁଛ ଜଞ୍ଜାଳ କଲେଣି ସାଉ । ଅନ୍ନ ଜଳ ଥିଲେ ଭଉଣ ନ ମିଳେ ଜାଲ ବିନା ପଡ଼ି କିରୁପେ ପାଉ ॥ ଆସନ ନ ଥାଇ ଶୟନ କରୁଛୁ ତେଲ ବିନା ତନୁ ଖରସି ଥାଉ । ଯେକ ଯେଣ ଅନ୍ନ ଗର୍ଭକୁ ପେଷିଲେ ସନ୍ଧ୍ୟାକାଳେ ସନ୍ଧ୍ୟା ନ ଲାଗେ ଆଉ । ୨ । ଯେତେ ଯେତେ କଥା କଲ ହେ ବ୍ୟବସ୍ଥା ଅନ୍ୟ ଜାଣି-ବାକୁ କେ ଅଛୁ ଆଉ । ଦେଖୁ ଦେଖୁ ହରି କଲୁ ଏତେସରି ପାଦ-ପଙ୍କଜରେ ଜୀବ ମିଳାଉ । ୩ । ଛଇଆ ଗ୍ରାମରେ ପଡ଼ିରହିଅଛୁ ତୁମ୍ଭ ମନରେ ଥାଉ କି ନ ଥାଉ । ଯାମର ହାଣ୍ଡିଆ ଭାସି ଯାଉଅଛୁ ସାଆନ୍ତ ହନ୍ତା କେ ତୁଲେ ଲଗାଉ । ୪ ।



ଚାଲ—ଯତି ।

ଭ୍ରାନ୍ତିମନ ଭଜେ ଭର୍ଗ ଯିବ ଗଜେନ୍ଦ୍ରଗମନ ରେ । ପଦ ।
ଇନ୍ଦ୍ରିୟ ସୁଖକୁ ଦେଇ । ହୋଇ ଥାଉ ସଦା ମାନୀ । ସଦୁପଦେଶନ ଦେଇ ମତ୍ତ ହୋଇ । ନେଉଅଛୁ ଦିନ ରେ ॥ ବହୁମୂଲ୍ୟ ଯୁବାକାଳ ଭଣ୍ଡବାକୁ ଭଣ୍ଡମଳ । ସାର କର ଧର୍ମବଳ ଦୃଢ଼େ ସେବ । ପତିତ-ପାବନ ରେ ।୨। ଘେନ ଘେନ ସୁବିଚାର । ନ ସେବ ଆଉ ସଂସାର । ସେବିଲେ ଦୁଃଖ ଅପାର ସୁଖଲେଶ । ନାହିଁ କଦାଚନ ରେ । ୩ । ଈଶ୍ୱର କରୁଣାପର । ସତତ ନିର୍ଭର କର । ଯେ ଦୟା ଲାଗି ସଂସାର । ଚମତ୍କାର । ଶୋଭାରେ ଶୋଭନ ରେ । ୪ ) ନରହିବ ମାଂସପିଣ୍ଡ । ଧର ପଞ୍ଚବାଣ ଦାଣ୍ଡ । ଛୁଟିବ ପାପ ପ୍ରଚଣ୍ଡ । ଯୋଗ ନଦେ । ମନ୍ତ୍ର ବହନ ରେ । ୫ ।

—ଃ✵ଃ—

ଚାଲ—ଏକତାଲି ।

ଏବା ଗୁରୁଙ୍କୁ ମନ କର ଭାବନା ।
ଗୁରୁହସ୍ତେ କଞ୍ଚ କୋଲପ ସିନା । ପଦ ।

ଏକଗୋଟି ଘର ତହିଁ ଦଶଦ୍ୱାର ତହିଁପରେ ସୁଷୁମ୍ନା । ତହିଁ ଗୋଲହାଟ ସୂତାରନ୍ଧ୍ର ବାଟ ସେଠାବଲୁ ମନ ଧାଇଁବୁ ସିନା । ୧ । ଗୁରୁନାମ ଗୋଟି ଶିଷ୍ୟରେ ବିଖ୍ୟାତ ଭଜନ କର ଆହେ ସୁଜ୍ଞଜନା । ଗୁରୁଙ୍କୁ ଭଜିଲେ ମୁକତି ପାଇବୁ ଅନ୍ୟ କାହିଁରେ ନ କର ଭାବନା ॥ ଆହିଥିଲା ଜୀବ ହରିନେଲା ଶିବ ଘେନି ଉଡିଗଲା ମନ ପବନା । ଗୋପପୁର ନାରୀ ଅନାଥ ହୋଇଲେ ଅକ୍ରୂର ଭଗାରି ହୋଇଲା ସିନା । ୩ । ଗୁରୁପାଦେ ଧ୍ୟାନ କରେ ଯେଉଁ ଜନ କହିବା ତାହାର ପୂର୍ବ ବାସନା । ସେହି ଦେହ ଘେନି ମର୍ତ୍ତ୍ୟେ ଜନମିଛି କେତେ ରତି ତହିଁ କେତେକ ଛନା । ୪ । ମନେ କରି ସତ୍ୟ ମାଇଲା ତା ପୁଣି ନାହିଁ ଘୁମୁରହିଁ ପୂର୍ବବାସନା । କହଇ ପଦନ ମୁରୁଖ ଅଜ୍ଞାନ ଅଭୟପଦ୍ମରେ କର ଭାବନା । ୫ ।

—○✵○—

ତାଳ—ଖେମଟା ।

ଅଲକ୍ଷ୍ୟ ଶୂନ୍ୟେ ଶବଦ । ଅନୁମାନ ଚାରେ ବେଦ । ଅକଳଣା ଭଗବାନ୍‌ଙ୍କ ନାମ ମହିମା ଅଗାଧ । ପଦ ।

ଗମ୍ୟ ନାହିଁ ଅବଧର୍ମ । ଜ୍ୟୋତି ଜ୍ୱାଳା ଊର୍ଦ୍ଧ୍ୱ ଧୂର୍ମ । ବ୍ରହ୍ମାବିଷ୍ଣୁ ଶିବ ଭ୍ରମ ଏମନ୍ତ ସେ ଯେଉଁ ପଦ । ୧ । ଯେ ରାମଚନ୍ଦ୍ର ଅନନ୍ତ କୃଷ୍ଣ-ଚନ୍ଦ୍ର ଜଗନ୍ନାଥ । ଅବିଯୁଗ ଅବତାରେ ହୋଇ ନ ପାରିଲେ ସିଦ୍ଧ । ୨ । ଋକ ଯଜୁ ଶ୍ୟାମାଥର୍ବ । ହ୍ରୀଂ ଶ୍ରୀଂ କ୍ଲୀଂ ବୃତ୍ତି । ଦଶ ଆକାଶରେ ଭ୍ରମି ଲୋଡି ନ ପାଇଲେ ସ୍ୱାଦ । ୩ । ପୃଥ୍ୱୀ ପଞ୍ଚଭୂତ ବାଇ । ଜ୍ୟୋତିତେଜ କଳା ବନ୍ଧ । ଚନ୍ଦ୍ର ସୂର୍ଯ୍ୟ ଉଦେ ହୋଇ ନ ପାଇଲେ ଅନ୍ତ ଆଦ୍ୟ । ୪ । ଛପନକୋଟି ଯେ ଜୀବ, କରି ନ ପାରିଲେ ଠାବ । ମୁନି ତପସ୍ୟାରେ ବସି ମନରେ ହେଲେ ସ୍ତବଧ । ଅବ୍ୟକ୍ତ ବ୍ରହ୍ମ ଯେହୁ । ରୂପ ରଚନାରେ ନାହିଁ । କହେ ଭୀମ ଅରକ୍ଷିତ ଅନାମେ ରହିଲା ଭେଦ । ୫ ।

—୦—

ତାଳ—ଯୋସ୍ତା ।

କୃପାସିନ୍ଧୁ ଦୀନବନ୍ଧୁ ଅଘତମ ଇନ୍ଦୁ ହେ ।
କୃପାକରି କର ପାରି ବେଗେ ଭବସିନ୍ଧୁ ହେ । ପଦ ।

ମାୟା ମୋହ ଫାନ୍ଦେ ପଡି ସୁପଥ ଛୁଡିଲ ହେ । ପାପ ତାପ ମାରେ ଅବଶେଷରେ ପଡିଲି ହେ । ୧ । ଭ୍ରମନଦି ବିପୁରଣି ଅତି ଆଗ୍ରେ ଧରି ହେ । ଏଣେ ତେଣେ କରୁଛନ୍ତି ଓଟରାଓଟରି ହେ । ବ୍ୟଥିତ ଚିତ୍ତ ଆରତ ହୋଇଲା ପ୍ରବଳ ହେ । ସରିଲାଣି ବୁଦ୍ଧି ସୁଖ ଅଙ୍ଗେ ନାହିଁ ବଳ ହେ । ୩ । ତୁମ୍ଭ ନାମ ଚାନ୍ଦବା ଚେତନା ହେଲେ ଉଦେ ହେ । ଦଣ୍ଡିଷିକା ଦେଖାଇ ଭୁଲାଏ ଭ୍ରମବାଦେ ହେ । ୪ । ବୁଡିଲ ବୁଡିଲ ବୃଥା ଲୋଭେ ମତ୍ତ ହୋଇ ହେ । ଦୁର୍ଲ୍ଲଭ ମାନବ ଜନ୍ମ ଦୁଃଖରେ କାଟଇ ହେ । ୫ । ପଶିଲି ତୁମ୍ଭ ଅଭୟ ପଦରେ ଶରଣ ହେ । ଭଣେ ଭାଗୀରଥୀ ଦେବ କର ପରିତ୍ରାଣ ହେ । ୬ ।

ତାଲ—ଆଡ଼ଖେମଟା ।

ଲାଗିଛୁ ଲୀଳା ନୀଳାଚଳଙ୍କେ ।
ରାଧା କୃଷ୍ଣ ଏକଅଙ୍ଗ ଯା ସଦାକାଳରେ । ପଦ ।

ଅନନ୍ତ ମସ୍ତକେ ଫଣି ଫଣିପରେ ଦିବ୍ୟ ମଣି । ତାପରେ ଅବ୍ୟକ୍ତ ମଣି ସହସ୍ରଦଳରେ । ୧ । ଆସୁଛୁ ଯାଉଛୁ ବାର ଏବାରରୁ ସେ ବାହାର ବାର ଭେଦ ଠାବ କର ତେର ମୂଳରେ । ୨ । ଝିର୍ମି ଧୂର୍ମି ଜ୍ୟୋତି ଜ୍ୱାଲା, ପ୍ରକାଶ ଏ ଗୃହକଲା । ତାପରେ ଲାଗିଛୁ ଲୀଳା ମୂଳ ଶୂନ୍ୟରେ । ୩ । ଧନ୍ୟ ଧନ୍ୟ ନୀଳକନ୍ଦ । ଯହିଁ କିଜେ ଆନନ୍ଦ । କହେ ଦାସ ହୃଦାନନ୍ଦ ପାଦତଳ ରେ । ୪ ।

---

ତାଲ—ଆଡ଼ଖେମଟା ।

ଅହେ ବିଶ୍ୱବନ୍ଦନ ତବ କୃପାରେ ବିଶ୍ୱନନ୍ଦନ ହେ । ପଦ ।
ଯେତେ କାର୍ଯ୍ୟ ତୁମ୍ଭର, ସବୁହିଁ ହିତକର, କେ କରି ପାରେ ବେଦ କଳନ ହେ । ୧ । ରବି ହୁଅନ୍ତେ ଶେଷ, ରାଜ ପିକ ବାୟସ ବିସ୍ତାର ତବ ଆଜ୍ଞା ପାଳନ ହେ । ୨ । ଆକାଶେ ଦିନକର, କର କରି ବିସ୍ତାର, ତମରାଶି କରନ୍ତି ଛେଦନ ହେ । ୩ । ଜନେ ତେଜି ଶୟନ, ନିତ୍ୟାବ୍ରତ ସାଧନ, କରନ୍ତି ଇଷ୍ଟମୁଖେ ବହନ ହେ । ୪ । ସୁଶୀତଳ ସମୀର, ବହଇ ଧୀର ଧୀର, ଅଶେଷ ସୁଖକରେ ପ୍ରଦାନ ହେ । ୫ । ତରୁଲତା ସମସ୍ତ, ହୁଅଇ ଆନ୍ଦୋଳିତ, କରଇ ନେତ୍ର ମନ ରଞ୍ଜନ ହେ । ୬ । ଚିନ୍ତିଲେ ହୃଦୟରେ, ତୁମ୍ଭର ପ୍ରେମବାରେ, ଭକ୍ତିରେ ମନ ହୋଏ ମଗନ ହେ । ୭ । ସେ ସବୁ ଦ୍ରବ୍ୟମାନ, ଜଗତେ ପ୍ରୟୋଜନ, ଆପେ ତା କରିଅଛ ସୃଜନ ହେ । ୮ । କୁତୁହଳ ମାନସେ, ଆମ୍ଭମାନଙ୍କ ଶେଷେ, କର୍ମାଣି ଦେଇଅଛ ସେ ମାନ ହେ । ୯ । ଧନ୍ୟ ତୁମ୍ଭ ମହିମା, କେ କରି ପାରେ ସୀମା, ପାପୀର ପାପମନେ ନ ଘେନ ହେ । ୧୦ । ଅସୀମ ସ୍ନେହ ବହି, ସୁପଥ ଦିଅ କହି, ପୁଣି ରଖାଅ ନିଜ ସଦନେ ହେ । ୧୧ । ହେ କ୍ଷମା ଜଳନିଧି, ମୁଁ ଅତି ଅପରାଧୀ, ନ

ଜାଣେ କିଛୁ ଧ୍ୟାନ ଭଜନ ହେ । ୧୨ । ପାଦେ ପଡ଼ି ଭୂମୀର, କରୁଛି ନମସ୍କାର, ଭାଗୀରଥୀଙ୍କ କର କାରଣ ହେ । ୧୩ ।

—୦✱୦—

ତାଳ—ଦକ୍ଷିଣୀ ।

ଘୂରେ ଚକାଡୋଳା । ଭକ୍ତଭାବକୁ ବାଞ୍ଛାଶୂନ୍ୟେ ଭେଲା । ପଦ। ଆସୁଥିଲା ବର୍ଷା ନ ଆସିଲା । ମହାନାଟପରେ କମ୍ପିଲା । ଛଳ, ଟୋପାପ୍ରାପ୍ୟେ କବାଟ ଲାଗିଛି । ତହିଁ ମତ୍ତଗଜ ଗଳିଗଲା ।୧। ଏକା ଚକେରଥ ଚଳୁଥିଲା । ବେନି ଚକେ ରଥ ନ ଚଳିଲା । ମହାନାଟ-ପରେ ଅନଳ ଜଳୁଛି ତଇଲ ପଡ଼ନ୍ତେ ଲିଭିଗଲା ।୨। ମୂଳ କାଟଠାରୁ ଛିନ୍ନ କଲା । ଷୋଳ ଗୁମ୍ଫାରେ ବଢ଼ିଶଜଲା । ମହାନାଟ ପରେ ଅମୃତ କୋଗାଡ଼ି ଧାଉଁ ଧାଉଁ ବର୍ଷା ନ ରହିଲା ।୩। ବନ୍ଧ ନ ଥିଲାକୁ ପାଣି ଥିଲା । ବନ୍ଧ ହେଲା ପାଣି ନ ରହିଲା । ସେ ବନ୍ଧ ହାଣନ୍ତେ ତଳକୁ ଖସନ୍ତେ ଉପରକୁ ପାଣି ବହିଗଲା । ୪ । ଗ୍ରୀଷ୍ମ ପାହିଣ ଦିବସ ହେଲା । ନିଜ ପଥ ଘୁଞ୍ଚି ନ ଦିଶିଲା । ବିହାଗୀ କହଇ ସେ ପାଦକୁ ଧ୍ୟାଇ ଅତି ରସେ ରସ ପାନକଲା ।୫।

—୦✱୦—

ତାଳ—ଛପକା ।

ଆରେ ଗୁଖା, ଝଡ଼ ଝଡ଼ ।

ମିଛ ମାୟାରେ ପଡ଼ି ହେଉ ଲଡ଼ବଡ଼ ଲଡ଼ବଡ଼ । ପଦ ।

ଚତୁର୍ଥ ବୟସ ହେଲେ ଅନ୍ତି । ଜନମ ହୋଇବେ ରୋଗଗ୍ରାସି । କଫ ସନ୍ନିପାତ ଚୁଙ୍କି ବାତ ପିତ୍ତ ଚଣ୍ଡି ଗୁଡ଼ୁଥିବ ଘଡ଼ ଘଡ଼୨ । ୧ । ପିଣ୍ଡରୁ ପରାଣ ଯିବ ଛୁଟି । ଶ୍ମଶାନକୁ ନେବେ ଘୋଷାଡ଼ି । ଜାତି ଭାଇ ବନ୍ଧୁ କୁଟୁମ୍ବ ସହିତେ କାଠ ଖଞ୍ଜିଦେବେ ବଡ଼ବଡ଼୨ । ୨ । ନେଇ ଥୋଇ ଦେବେ ତହିଁପରେ । ଦୟା ନ ବହିବେ କଣ୍ଠତରେ । ତଳମୁହାଁ କରି ହାତଗୋଡ଼ ପୁଣି । ଭାଙ୍ଗି ଦେବେ ଧରି ମଡ଼ମଡ଼୨ ॥ ଦଶମ ଦିନରେ ଦଶଘର । ଏଗାର ଦିନରେ ଷୋଡ଼ଶର । ତେର

ଦିନେ ଅନ୍ନବ୍ୟଞ୍ଜନ କ୍ଷୀରଷା ବହି ଖାଉଥିବେ ସଡ଼ୁସଙ୍ଗ । ୪ । କହେ
ଗଦାଧର ହେତୁ କର । ଖୋଜ ସାଧୁ ସଙ୍ଗତେ ବିହର । ଯେବେ ଏ
ସଂସାରୁ ତରିବୁ ମନ କୃଷ୍ଣ ପାଦପଦ୍ମେ ପଡ଼ ପଡ଼ । ୫ ।

—✱—

ତାଳ—ଯତି ।

ଏହୁ ମନ ସ୍ଥିନା ରହୁର୍ଦ୍ଧା ମୂରଛି ହେ । ମୂଢ଼ମତି । ପଦ ।
ମନ କହେ ଶଲଭନ । ହେଲୁରେ ଦେଖିବୁ ବ୍ରହ୍ମ । ଏ ତତ୍ତ୍ୱ ଗର୍ବ
କେଦେଣ । ଦଣ୍ଡିବେ ନାହିଁ ଶମନ । ସନକାଦି ମୁନି ଧ୍ୟାଉଛନ୍ତି
ହେ । ୧ । ନ ଖୋଲ ତଡାଗ କୂପ । ଦେଉଳେ ତୋଷ୍ଟା ନ ଲୋପ,
ସ୍ଥାପନା ଦିଅଁ ନ ସ୍ଥାପ । ନ ଯା ବୃନ୍ଦାବନ ଗୋପ । ନ ଯା ଭୃଗୁ
ପ୍ରୟାଗ ଗୋମତୀ ହେ । ୨ । ଏ ଜ୍ଞାନ ହୃଦେ ନ ଧର । ତିଳକ ମାଳା
ନ କର । କନ୍ଥା କୌପୀନ ନ ଧର । ଭସ୍ମ ଅଙ୍ଗୁ ପରିହର । ଗଙ୍ଗା-
କୂଳେ ନାହିଁ ସଦଗତି ହେ । ୩ । ଆତ୍ମାକୁ ଆତ୍ମାରେ ଦେଖ ।
ଦେଖିଲେ ପାଇବୁଂ ସୁଖ । ତୋର ଦେହେ ଭୁଷ୍ଟ ଦେଖ । ବସୁଅଛନ୍ତି
ଜଗ ଜଗ । ଭବି କହେ ପାମର ଅର୍ଥୀ । ୪ ।

—✱—

ତାଳ—ଯତି ।

ଫନ୍ଦା ଲଗିଛୁ ହୋ ହରିନାମ ବିଆରିରେ ।
ଲହସି କଲ୍ପନା କରୁଅଛୁ ବଣା ଧୋଇ ହେଲା ବିରଲ୍ଲରେ । ପଦ ।
ମୁଣ୍ଡକଲ ମୁଣ୍ଡା, ଜିହ୍ୱାକଲ ଫାଲ, ଦଉଡ଼ି ବଳାଇଲ କେଶ । ହୁଳ
ବାହୁ ହୁଳ ବଳଦ ଯୋଡିଲେ ହୃଦରୁ କାଢ଼ିଲ ଈଶ । ପାଞ୍ଚ
ପଚାଶକୁ ନେତୃଷ୍ଟ କରି ମୁଁ କରିଥିଲି ଫନ୍ଦା ଖଣ୍ଡେ । ତ୍ରିବେଣୀ
ନଦୀରୁ ପାଣି ବୁହାଇଲି ବୋହି ଗଲା ରାଜଦାଣ୍ଡେ । ୨ । ପାଞ୍ଚ ମନ
ତହିଁ ଧାନବୃକ୍ଷ କଲି ଉର୍ମିକୁ କଳ ମୁଁ ହର । ନବ ଦ୍ୱାରେ ନବ
ବଳଘା ପଡିଲା କେବେ ନ ରହିଲା ନୀର । ୩ । ପଚାଶ ମୁଲିଆ ଧାନ
ବାଛୁ ଗଲେ ହଗାଇ ଅଇଲେ ମୂଳ । ତ୍ରିବେଣୀ ନଦୀ ସେ ତହିଁ ଯେ

ବଢ଼ିଲା ଖାଇ ଗଲା ବେଳ କୂଳ । ୪ । ଯେତେବେଳେ କ୍ଷେତ ପୋଖତ ହୋଇଲା ଚୈତନ୍ୟ ଜଗୁଆ ଥିଲା । କହେ ପଣ୍ଡୁ ଗ୍ରାମ ଭୂଇଁଆ ମୂଷା ତା ବାହନ ବୁଡାଇ ଦେଲା । ୫ ।



ତାଳ—ଖେମଟା ।

ଫୁଲଫୁଟିଛି ଜଗତେ । ଫୁଲର ବାସନା ଏକା ଜାଣନ୍ତି ଭକତେ । ପଦ ।
ଏକାକ୍ଷରେ ଫୁଟେ ଫୁଲ ପଞ୍ଚବର୍ଣ୍ଣ ରଙ୍ଗ । ସେ ଫୁଲକୁ ଯେ ଚାହଇ ଅଜାମର ଅଙ୍ଗ । ୧ । ସେ ଫୁଲର ନାମ ଅଟେ ଅମର ଔଷଧି । ସେ ଫୁଲକୁ ଯେହୁ ଚାହେ ଲଭଇ ସେ ସିଦ୍ଧି । ୨ । ସେ ଫୁଲ ଫୁଟିଛି ଏକ ବୈଷ୍ଣବ ମଠରେ । ଛାଡ଼ିଥିଲ ଯାଶୋଧିଲ ଜନନୀ ଜଠରେ । ୩ । ଶୂନ୍ୟରେ ଫୁଟିଛି ଫୁଲ ତୋଳି ଯେ ନ ଆସେ । ଅଚ୍ୟନ୍ତ ସୌରଭ ଫୁଲ ଆଘ୍ରାଣେ ନ ବାସେ । ୪ । ସେ ଫୁଲର ଆଦି ଅନ୍ତ ନ ଜାଣନ୍ତି କେହୁ । ରାମଦାସ କହୁଛନ୍ତି ନୟନ ପୂରାଇ । ୫ ।



ତାଳ—ଯତି ।

ମନ ଭ୍ରମର ରେ ଏ ଫୁଲରେ ନାହିଁ ବାସ ।
କାହିଁ ପାଇଁ ଲୁବ୍ଧ ବାଇ ହୋଇଅଛୁ ତହିଁ ପାଇବୁ କି ଯଶ । ପଦ ।
ଫୁଟି ମଲ୍ଲୀ ରମ୍ଭା ଛନ୍ତି ଗଲାଣି ବାସି ହୋଇଲାଣି ବାସ । ବାର ବାର ତୋତେ ମନା କରୁଅଛୁ ପାଇବୁଟି ଅପଯଶ । ୧ । ପର୍ବତ ଶିଖରେ ପଦ୍ମ ଫୁଟିଅଛୁ ଉଲଟି ରହିଛି ପୁଷ୍ପ । ଯେବେ ତୁ ପାଇବୁ ସେଠାବକୁ ଯିବୁ ନଷ୍ଟିନେ ହୋଇବୁ ତୋଷ । ୨ । ସେଠାରୁ ତ୍ରିବେଣୀ ବହୁଛି ଉଜାଣି ତହିଁରେ ଖେଳୁଛି ହଂସ । ଅମୁନି ଦେଖିଲେ ପଣ୍ଡ ବାଜୁଅଛି ନାହିଁ ରଜନୀ ଦିବସ । ୩ । ଅଣସୂତ୍ର ମାଳ ବାମକରେ ଧରି ବସି ଅଛନ୍ତି ମହେଶ । ମାଳା ହଜିଗଲେ ଭେଳା ବୁଡିଯିବ କହଇ ଗୋରେଖ ଦାସ । ୪ ।



ତାଳ—ଖେମଟା ।

ବାଇମନ ହୋ । ବସି ହଂସକୁ ଖେଳା । ହଂସ ଉଡିଗଲେ ବୃଥବ ହେଲା । ପଦ ।

ପୋଖରୀ ଗୋଟିକ ଚାରି ତୀରସ । ଉମ୍ଭ ଉଡିଗଲା ଅଣ୍ଡିରା ହଂସ । ଶୁଖିଲା ପୋଖରୀ ମାରେ ଲହଡ଼ୀ । ଉମ୍ଭ ଅଛି ଢୁଆ ଗଲାଣି ଉଡି । ୨ । ଉମ୍ଭ ଗୋଟିକେ ଭଲ୍ୟ ଢୁଆ । ସୁଜ୍ଞାନୀ ହୋଇଲେ କହନ୍ତୁ ଏହା । ୩ । ସର୍ପକୁ ମଣ୍ଡୁକ୍ୟା କରୁଛି ଗେଲ । ଯୁଇବୃକ୍ଷେ ଅଛି ମନ୍ଦାର-ଫୁଲ । ୪ । ଏକ ଦେଉଳରେ ଦଶ କବାଟ । କେଉଁଠାରେ ଅଛି କଳପବଟ । ୫ । ଗୀତ ପାଞ୍ଚପଦ ଅର୍ଥ ବନ୍ଧୁତ । ଭାବରେ ଭଣିଲେ ଦୀନ ଅଚ୍ୟୁତ । ୬ ।



ତାଳ—ଯତି ।

ଅମଳ କମଳଚରଣକୁ ମନ ଭ୍ରମର ତୁ ଉଡି ଯାଆରେ ।
କମଳାସେବିତ କୋମଳ ଚରଣେ ନିରନ୍ତର ଚୁମ୍ବୁଥାରେ । ପଦ ।

ଯେଉଁ ପଦ୍ମପାଦେ ଅଷ୍ଟାଦଶ ତୀର୍ଥ । ଗଙ୍ଗା ଆଦିକରି କୋଟି ତୀର୍ଥମାନ । ଝରୁଅଛି ସଦା ଅକ୍ଷୟ ଅମୃତ । ପାନକର ତୁ ମଜାରେ ॥ ଯେଉଁ ପାଦ ଲାଗି ଅହଲ୍ୟା ମୁକତ । ଯେ ପାଦ ଧୋଇ ପିଇଲା କଇବର୍ତ୍ତ । ସେହି ପାଦ ଧ୍ୟାଇ ରାବଣର ଭାଇ । ଲଙ୍କାକଣ୍ଟକ ରାଜାରେ ॥ ଯେଉଁ ପାଦ ସେବି ଋଷି ମାର୍କଣ୍ଡ । ପ୍ରଳୟଜଳରେ ଦେଖିଲେ ବ୍ରହ୍ମାଣ୍ଡ । ସେହିପାଦେ ଲେପି ଅଗରଚନ୍ଦନ ସୁନ୍ଦରୀ ହେଲା କୁବ୍ଜାରେ । ୩ । ବଳୀ ଉଗ୍ରସେନ ସୁଗ୍ରୀ ହନୁମାନ । ଯେଉଁ ପଦ୍ମପାଦେ ପଶିଲେ ଶରଣ । କୁମ୍ଭୀଳ ଜଳରେ ଗଜ ଉଦ୍ଧାରଣ । ସେହି ପାଦେ ରହ ଯା ରେ । ୪ । ଧ୍ରୁବ ପ୍ରହଲାଦ ଦ୍ରୌପଦୀ ନାରଦ । ପଞ୍ଚପାଣ୍ଡବେ ସେବିଲେ ଯେଉଁ ପାଦ । ଭାବି ସେହି ପଦ ରହ ସଦାନନ୍ଦ । ଦୁଷ୍ଟ ସଙ୍ଗକୁ ନ ଯା ରେ । ୫ । ଯେଉଁ ପଦ୍ମପାଦେ କରି ଯୋଗଲୟ । ମୃତ୍ୟୁକୁ ଜିଣିଛନ୍ତି ମୃତ୍ୟୁଞ୍ଜୟ । କୃତାର୍ଥ ଗତିକି ସେପଦ ଅବ୍ୟୟ । ଚନ୍ଦ୍ର

ଛତ୍ରକୁ ମଣ୍ଡାରେ । ୬ । ପୁରାଣ ବର୍ଣ୍ଣିଲେ ବ୍ୟାସମୁନି ଶୁକ । ଯାହା ଭାବୁଛନ୍ତି ସନକ ଜନକ । ତ୍ରୈଲୋକ୍ୟ ନାଥ ମୋ ମୁକୁନ୍ଦଦାସଙ୍କ ମୁକ୍ତି ପଥକୁ ଧ୍ୱଜାରେ । ୭ । ସାଧୁସଙ୍ଗ କର ନ ଭାଳ ଭୁ ଆନ । ସହସ୍ରଦଳ କମଳେ ନିରଞ୍ଜନ । କହଇ ଅଚ୍ୟୁତ ଦେଖିବୁ ପ୍ରତ୍ୟକ୍ଷ । ପଞ୍ଚମନକୁ ବୁଝା ରେ । ୮ ।

—୦—

ଢାଳ—ଯଦୁ ।

ଲାଗିଛୁ ଲୀଳା ଶୂନ୍ୟମଣ୍ଡଳରେ ।
ସଜୀବ ଅଜୀବ ଜୀବ ଅନ୍ତରେ । ପଦ ।

ବାରବେନିବାଟ, ଉତ୍ତର କବାଟ, ଯିବାକୁ ସଙ୍କଟ ସୂତରନ୍ଧ୍ର ରେ । ଅଷ୍ଟକଣା ଭେଦ, ଶ୍ରୀମଠ ଗାଦୀ, ସ୍ୱାଦ ମସାଦ ଷଡ ଅକ୍ଷରେ । ବଟପୃଷ୍ଠରେ, ବିନା ଯନ୍ତ୍ରରେ, ବୀଣା ବାଜୁଅଛୁ ଗୋଲୋକପୁରରେ । ୧ । ବଙ୍କୁନାଳ ପାଣି, ଉଲଟି ଉଜାଣି, ବହୁଛୁ ତ୍ରିବେଣୀ ତଥିମଧ୍ୟରେ । ସତ୍ତ୍ୱ ରଜ ତମ, ଶ୍ରୀମଠ ଧାମ, ଲାଗିଛୁ ଭଜନ ନାଗପୁରରେ । ଦୁର୍ଗା ସମ୍ମୁଖରେ, କର ଦୃଶ୍ୟରେ, ଦ୍ୱୀପ ଜଳୁଅଛୁ ବିନାବତୀରେ । ୨ । ବିନା ବନ୍ଧେ ଜଳ ଲହରୀ ପ୍ରବଳ, ଫୁଟିଛୁ କମଳ ବିନା ବୃକ୍ଷରେ । ଅଣା-କାର ଭୂଇଁ, କଳନା ନ ଯାଇ, ଷଣ୍ମୁଖୀ ଗାଇ ଚରେ ତହିଁରେ ॥ ଷୋଳ ଭରରେ, ତା କ୍ଷୀର ଝରେ, ବାଞ୍ଛାନନ୍ଦନ ତା ଆପ୍ୟାନ କରେ । ୩ । ବାର ବାର ବନ୍ଧ, କମଳରେ ସନ୍ଧି, ପବନ ନିରୋଧ ନିଜ କ୍ଷେତ୍ରରେ । ଗଙ୍ଗାଧର କହ, ଅଙ୍ଗୀନୀ ଅଟଇ, ପବନକୁ ଭେଦ ସପତାଙ୍ଗରେ, କର ଶୋଭରେ, ଷୋଳ ଅକ୍ଷରେ, ମାଳା ଗନ୍ଥୁଅଛୁ ବିନା ସୂତ୍ରରେ । ୪ ।

—୦—

ଚାଳ—ଯଦୁ ।

କାହିଁପାଇଁ ମନ ଭୁଲିଛୁ ମାୟାରେ ।
ଏ ଭବେ ବିଭବ ସବୁ ଯିବକି ସଙ୍ଗରେ । ଘୋଷା ।

ଷାଣ୍ଡ ଲୁଟିଲଡା ପଣ, ଦ୍ୱେଷ ହିଂସା ତମୋଗୁଣ, ଏ ସବୁ ପାପ କାରଣ, ନ ଭୁଲିଲୁ ଥରେ । ୧ । ଛାଡ଼ ଦମ୍ଭ ଅଭିମାନ, ସଂସାର ସାର ସାଧନ, ଇଷ୍ଟଗୁଣ କୀର୍ତ୍ତିମାନ, କର ନିରନ୍ତରେ । ୧ । କେହି ନୋହିବେ ଅମର, ଶାସ୍ତ୍ର ଅନ୍ତେ ଯେ ଯାହାର, ପ୍ରାଣପକ୍ଷୀ ଯିବ ଉଡ଼ି ପିଣ୍ଡକୁ ଥୋଇ ଶୂନ୍ୟରେ । ଯାହା ନାମ ଶତ୍ରେ ମନ୍ତ୍ର, ଭବ ସିନ୍ଧୁ, ହୋନ୍ତିପାର । କହେ ଭାଗୀରଥୀ ତାଙ୍କ । ସ୍ମାପ ହୃଦପୃରେ । ୪ ।

—୦❋୦—

ତାଳ—ଯୋସ୍ତା ।

ବିଷ୍ଣୁପତି ମୋ ବିନତି ଘେନି ପଦେ ଦିଅ ସ୍ଥାନ ।

ନ ପାରଇ ସହି ଆଉ ସଂସାର ଯାତନାମାନ । ଘୋଷା ।

ଆହେ ପ୍ରଭୁ ଅନ୍ତର୍ଯ୍ୟାମୀ । ଅଖଣ୍ଡ ବ୍ରହ୍ମାଣ୍ଡ ସ୍ୱାମୀ । ତୁମ୍ଭଙ୍କ କି ଜଣାଇବି କେଉଁ କଥା ବା ନ ଜାଣ । ୧ । ମୋହମାୟାରେ ଭୁଲିଲି । ସଂସାର ସୁଖ ଲୋଡ଼ିଲି । ଶତ୍ରୁ ସଙ୍ଗତେ ବୁଲିଲି । ଅନୁକ୍ଷଣେ କାନ୍ଦେ ପ୍ରାଣ । ୨ । ଆହେ ଦେବ ଭାବଗ୍ରାହୀ । ଭକ୍ତିଭାବ ନ ଜାଣଇ । ଏ ଭବରୁ କର ତ୍ରାହି ଡାକେ ଭାଗୀରଥୀ ଦୀନ । ୫ ।

—୦—

ତାଳ—ଝୁପକା ।

କହୁଅଛୁ ଗଇଡନ, ଖୋଜ ସାଧୁସଙ୍ଗ ଚାଲ, ଗୁରୁଙ୍କ ଶ୍ରୀପଦ ଜ୍ଞାନ ଯୋଗିଛୁ ଅଶେଷ ବ୍ରହ୍ମ । ତୃଦେଗିବି । ନାଭିମଣ୍ଡଳ ଆସେ ଫେରି ଫେରି । ୧ । ଚନ୍ଦ୍ର ସୂର୍ଯ୍ୟ ବନ୍ଧକର । ଷଡ ରତିରେ ବିହର । ଦୀବନ ପରମ ବିଶ୍ୱରି । କ୍ଷୀନ ନାଳେ ସ୍ୱେର ଧର । ନିତ୍ୟଦଳେ । ଅଷ୍ଟସଖୀ ସେବା ଦେଖ ନିରନ୍ତରେ । ୨ । ଟେକି ଥାକିଲେ ପାଇବୁ ପୂର୍ଣ୍ଣ ବ୍ରହ୍ମକୁ ଚାହିଁବୁ । ଛମ୍ଭରୁ ଷୋଳ ଭେଦିବୁ । ତାଙ୍କ ଶିଷ୍ଟାଣ କହିବୁ । ଅଣାକାର ଅକାର ମକାର ମନ ହେତୁ କର । ୩ । ତିନିକି ଏକ କରିବୁ । ଥକାଏ ବସିଲେ ଥିବୁ । ଦୁଇଦଳ ମଧ୍ୟେ ଯିବୁ । ଧୀର ସର୍ଧିରେ ଚହିଁବୁ । ଜାଲଗିବି । ରତ୍ନଭିତ୍ତି ମୂରତି ଛନ୍ତି ବଜେଇକରି । ୪ । ପଦ୍ମ

